# ଉପୋଦ୍‌ଘାତ

ଶ୍ରୀମଦ୍ ଭଗବଦ୍ଗୀତାର ତ୍ରୟୋଦଶ ଅଧ୍ୟାୟ ଚତୁର୍ଥ ଶ୍ଳୋକରେ ବର୍ଣ୍ଣିତ ହୋଇଛି କି,

*'ଋଷିମାନଙ୍କ ଦ୍ୱାରା ବିଶଦ ଭାବରେ କଥିତ ଯେଉଁ ତତ୍ତ୍ୱ ବେଦର ଋଚାମାନଙ୍କ ଦ୍ୱାରା ବିବିଧ ପ୍ରକାରେ ଭିନ୍ନ ଭିନ୍ନ ରୂପେ ବର୍ଣ୍ଣିତ ହୋଇଛି ଏବଂ ଯୁକ୍ତିଯୁକ୍ତ ପୂର୍ବକ ବ୍ରହ୍ମସୂତ୍ରର ପଦମାନଙ୍କ ସାହାଯ୍ୟରେ ନିର୍ଣ୍ଣିତ ହୋଇଛି, ତାହା କ୍ଷେତ୍ରକ୍ଷେତ୍ରଜ୍ଞର ତତ୍ତ୍ୱ ଅଟେ ।'*

ଏହି ଯେଉଁ କ୍ଷେତ୍ର ବିଷୟରେ କୁହାଯାଉଛି ତାହା ଶରୀର ହୋଇଥିଲାବେଳେ କ୍ଷେତ୍ରଜ୍ଞ ଭଗବାନଙ୍କୁ ବୁଝାଉଥିବାରୁ ଆମ୍ଭେ କହିପାରିବା କି, ଜ୍ଞାନ ହିଁ ଏହାର ନିର୍ଣ୍ଣିତାଂଶ । କାହିଁକି ନା ଭଗବାନ୍ ନିଜେ ପୂର୍ବଶ୍ଳୋକରେ କହିଛନ୍ତି କି, ଏହି ଯେଉଁ କ୍ଷେତ୍ରକ୍ଷେତ୍ରଜ୍ଞ ଅବଗତି ତାହା ହିଁ ଜ୍ଞାନ । ଏଠାରେ କ୍ଷେତ୍ରର ଅନନ୍ତ ବ୍ରହ୍ମାଣ୍ଡ ସହିତ ଏବଂ କ୍ଷେତ୍ରଜ୍ଞର ଅର୍ଥାତ୍ ଜୀବାତ୍ମାର ଅନନ୍ତ, ଅପାର, ଅସୀମ ବ୍ରହ୍ମ ସହିତ ଏକତ୍ୱ ରହିଛି । ତାତ୍ପର୍ଯ୍ୟ ହେଲା ଉଭୟ ଅଭିନ୍ନ । ଭଗବାନ୍ ଅଭିନ୍ନତ୍ୱକୁ କେବଳ ଏହିଠାରେ ବର୍ଣ୍ଣନା କରିନାହାଁନ୍ତି ବରଂ ବେଦର ଋଚାମାନଙ୍କରେ ତଥା ବ୍ରହ୍ମସୂତ୍ର ଭଳି ଗ୍ରନ୍ଥରେ ପ୍ରତିପାଦିତ ହୋଇଥିବା ବ୍ରହ୍ମକୁ ବ୍ୟକ୍ତ କରିଛନ୍ତି ବୋଲି ସ୍ପଷ୍ଟ ଇଙ୍ଗିତ ମଧ ଦେଇଛନ୍ତି ।

ଏଠାରେ ଭଗବାନ୍ ଯେଉଁ ବ୍ରହ୍ମସୂତ୍ର ସମ୍ପର୍କରେ କହିଛନ୍ତି ତାହା କ'ଣ ଏବଂ କେଉଁଠୁ ଆସିଛି ? ଉପନିଷଦ୍‌ଗୁଡ଼ିକରେ ପୂର୍ବ ନିର୍ଦ୍ଦିଷ୍ଟ ଏବଂ ପୂର୍ବାପର ସାମଞ୍ଜସ୍ୟପୂର୍ଣ୍ଣ କୌଣସି ଦାର୍ଶନିକ ମତବାଦର ସଂସ୍ଥାନ ନ ଥାଏ । ଆପତ ଦୃଷ୍ଟିରେ ଏହି ଗୁଡ଼ିକ ମଧରେ ପରସ୍ପର ବିରୋଧୀ ଭାବ ହିଁ ଦୃଷ୍ଟ ହୁଏ । ସେଥିପାଇଁ ଉପନିଷଦ୍‌ଗୁଡ଼ିକ ମଧରେ ନିହିତ ଚିନ୍ତାଗୁଡ଼ିକ ଶୃଙ୍ଖଳିତ ଭାବରେ ନିବଦ୍ଧ କରିବାର ପ୍ରୟୋଜନ ରହିଥିଲା । ବ୍ରହ୍ମସୂତ୍ର ଯାହାକୁ ଆମେ ବେଦାନ୍ତ-ସୂତ୍ର ବା ସାର ଭାବରେ ବ୍ୟକ୍ତକରୁ ତାହାର ସଙ୍କଳକ ବାଦରାୟଣ ଅର୍ଥାତ୍ ଭଗବାନ୍ ବ୍ୟାସ କେବଳ ସୁବ୍ୟବସ୍ଥିତ କରିବାପାଇଁ ଚେଷ୍ଟା କରିଥିଲେ ତାହା ନୁହେଁ ବରଂ ବ୍ରହ୍ମଙ୍କୁ ପ୍ରତିପାଦନ କରିବାପାଇଁ ପ୍ରୟାସ ମଧ କରିଛନ୍ତି । ଆମେ ଏହି ଗ୍ରନ୍ଥରେ ଦେଖିବାକୁ ପାଉ କି, ବେଦାନ୍ତର ଅନେକଗୁଡ଼ିକ ଶାଖା ଏବଂ ସେ ସବୁର ମତବାଦକୁ ନେଇ ଅନେକ ଅନୁଗାମୀ ମଧ ଥିଲେ । ଯେମିତିକି ଉଡ୍‌ଲୋମୀ, କାଶକୃସ୍ନ, ବାଦରୀ, ଜୈମିନୀ, କାର୍ଷ୍ଣଜିନି, ଆଶ୍ମରଥ୍ୟ ଇତ୍ୟାଦି ନାମରେ ଅନେକେ ଏହା ଉପରେ ତର୍ଜମା କରିଛନ୍ତି ଓ ମତବ୍ୟକ୍ତ କରିଛନ୍ତି ତାହା ଆମକୁ ଉକ୍ତ ଗ୍ରନ୍ଥରୁ ଅବଗତ ହୁଏ । ଯଦିଓ

ବାଦରାୟଣ ସେମାନଙ୍କର ମତକୁ ମାନ୍ୟତା ଦେଇ ବ୍ରହ୍ମଙ୍କୁ ପ୍ରତିପାଦନ ପୂର୍ବକ ତତ୍ତ୍ୱ ସନ୍ନିବେଶିତ କରିଛନ୍ତି ତଥାପି ଏମାନଙ୍କର ନାମରୁ ମନେହୁଏ ଯେ, ବେଦାନ୍ତ ଶାସ୍ତ୍ରର ସୂତ୍ରକାର ଭଗବାନ୍ ବ୍ୟାସ ନୁହଁନ୍ତି । ଅର୍ଥାତ୍ ପୂର୍ବରୁ ଅନେକେ ଏହା ଉପରେ ମତବ୍ୟକ୍ତ କରିଛନ୍ତି ମାତ୍ର ଯେଉଁ ଆକାରରେ ଆମକୁ ଏହା ଉପଲବ୍ଧ ହେଉଛି ତାହା ଭଗବାନ୍ ବ୍ୟାସଙ୍କର ଅବଦାନ ବୋଲି ଧରିନେବାକୁ ହେବ । ପୁନଶ୍ଚ ସେହି ଭଗବାନ୍ ବ୍ୟାସ ଯେ ଭଗବାନ କୃଷ୍ଣଙ୍କର ସମସାମୟିକ ତାହା ମଧ ସନ୍ଦିହାନ । ସେ ଯାହାହେଉ ଉକ୍ତ ଭଗବାନ୍ ସର୍ବଜ୍ଞ ଭାବରେ ବ୍ୟକ୍ତ ହୁଅନ୍ତୁ ଅଥବା ସାନ୍ଦିପନୀ ଆଦି ଋଷିଙ୍କଠାରୁ ପ୍ରାପ୍ତ ହୁଅନ୍ତୁ ମାତ୍ର ଏହି ବ୍ରହ୍ମସୂତ୍ରକୁ ସେ ତାଙ୍କ ନିଃସୃତ ବାଣୀଠାରୁ ଶ୍ରେଷ୍ଠ ବୋଲି ମଧ ବର୍ଣ୍ଣନା କରିପକାଇଛନ୍ତି ।

ସମ୍ଭବତଃ ବାଦରାୟଣ କୃତ ବେଦାନ୍ତସାର ଗ୍ରନ୍ଥଟି ଯାହା ଆମକୁ ସୂତ୍ରାକାରରେ ଉପଲବ୍ଧ ହୁଏ, ତାହା ବେଦାନ୍ତର ନିର୍ଯ୍ୟାସକୁ ଉକ୍ତ କରୁଥିବାରୁ ଏହି ଗ୍ରନ୍ଥର ନାମ ବ୍ରହ୍ମସୂତ୍ର । ଶାସ୍ତ୍ରଭିଜ୍ଞ ପଣ୍ଡିତଙ୍କ ମତରେ ସୂତ୍ରର ପରିଭାଷା ହେଉଛି--

*"ସୂତ୍ର ସଂକ୍ଷିପ୍ତ, ଦୁରଅର୍ଥ ବିହୀନ, ଆଲୋଚ୍ୟ ବିଷୟର ସାରାଂଶ ଦ୍ୟୋତକ ଏବଂ ଶଙ୍କା ସମାଧାନପରକ, ପୁନରୁକ୍ତି ବର୍ଜିତ ଏବଂ ତ୍ରୁଟିହୀନ ହୋଇଥାଏ ।"*

ଏହା ମାଧବାଚାର୍ଯ୍ୟ ଭାଷ୍ୟ ବ୍ରହ୍ମସୂତ୍ରରେ ଉକ୍ତ ହୋଇଛି ମାତ୍ର ପଦ୍ମପୁରାଣରେ ଏହି ଉକ୍ତିଟି ଆମକୁ ପ୍ରାପ୍ତ ହୁଅନ୍ତି । ତେବେ ଏସମସ୍ତ ଲକ୍ଷଣକୁ ସ୍ୱୀକାର କରୁଥିବା ବେଦାନ୍ତ ସାର ଗ୍ରନ୍ଥଟି ସୂତ୍ର ଭିନ୍ନ ଅନ୍ୟକିଛି ନୁହେଁ । କାରଣ ଏଥିରେ ଚାରିଗୋଟି ଅଧାୟରେ ଚାରି ଚାରିଗୋଟି ପାଦ ସହିତ ମୋଟ ୧୬ ଅଧାୟରେ ୫୫୫ଟି ସୂତ୍ର ପରକବାକ୍ୟ ସନ୍ନିବେଶିତ ହୋଇ ପ୍ରାପ୍ତ ହେଉଛନ୍ତି । ପୁଣି ପ୍ରତ୍ୟେକଟି ବାକ୍ୟ ଛନ୍ଦାୟିତ ନୁହେଁ କି ଶ୍ଳୋକଯୁକ୍ତ ନୁହେଁ ଅତଃ ଏହା ସୂତ୍ର । ପୁନଶ୍ଚ ଅନ୍ୟକୌଣସି ଦିଗକୁ ସ୍ପର୍ଶ ନକରି ଏକକ ଦିଗରେ ଧାବିତ ହେଉଥିବା ଜ୍ଞାନାନ୍ୱେଷୀ ବ୍ରହ୍ମଙ୍କୁ ଅନୁସନ୍ଧାନପୂର୍ବକ ବ୍ୟକ୍ତ କରୁଥିବାରୁ ଏହା ବ୍ରହ୍ମସୂତ୍ର ।

ପାଠକ ! ଏଥିରେ ଦ୍ୱିମତ ହେବାର କିଛି କାରଣ ନାହିଁ କି, ସର୍ବକାଳେ, ସର୍ବସମୟେ ବିଜ୍ଞଜନମାନେ ଯେଉଁ ଅବୋଧ ସତ୍ୟକୁ ବ୍ୟକ୍ତ କରିବାକୁ ଚେଷ୍ଟାକରି ସଫଳ ହୋଇଛନ୍ତି ସେହିମାନେ ହିଁ ଆଚାର୍ଯ୍ୟ ବୋଲାନ୍ତି । ଅତଃ କାଳେକାଳେ ଏହା ଉପରେ ଅନେକାନେକ ଭାଷ୍ୟ ବର୍ଣ୍ଣନା ହୋଇଚାଲିଛି । ଶ୍ରୀମଦ୍ ଆଦିଶଙ୍କରାଚାର୍ଯ୍ୟଙ୍କଠାରୁ ଆରମ୍ଭ କରି ଅଧୁନାତମ କାଳ ପର୍ଯ୍ୟନ୍ତ ଏହାର ବ୍ୟୁତ୍ପତ୍ତିପରକ ବ୍ୟାଖ୍ୟା ଶତାଧିକ ସଂଖ୍ୟାରେ ଉପଲବ୍ଧ ହେଉଛି । ପ୍ରଭେଦ ମାତ୍ର ଉପସ୍ଥାପନର ଶୈଳୀରେ ଭାଷାର ତାରତମ୍ୟରେ ତଥା ଶଙ୍କା ଉନ୍ମୋଚନର ସ୍ୱତନ୍ତ୍ରତାରେ ବ୍ୟକ୍ତ ହୋଇଥିଲାବେଳେ ଅନୁଗାମୀମାନଙ୍କୁ ଅବଶ୍ୟ

ଜ୍ଞାନ ପ୍ରଦାନ କରିବାକୁ ଯେଉଁ ଆଚାର୍ଯ୍ୟମାନେ ଯେଉଁଭଳି ଭାବରେ ପ୍ରୟାସ କରିଛନ୍ତି ତାହାଙ୍କୁ ସେହି ନାମରେ ନାମିତ କରିଦିଆଯାଇଛି । ଯଥା : ଶାଙ୍କର ଭାଷ୍ୟ, ରାମାନୁଜ ଭାଷ୍ୟ, ମାଧବ ଭାଷ୍ୟ ଇତ୍ୟାଦି । ଖାଲି ସେତିକି ନୁହେଁ ଟୀକାକାରମାନଙ୍କର ଟିପ୍ପଣୀରୁ ଯେତେ ମାତ୍ରାରେ ଏହାର ସ୍ୱତନ୍ତ୍ରତା ବ୍ୟକ୍ତ ହୋଇଛି ଉକ୍ତ ଟୀକାକୁ ସେତେମାତ୍ରାରେ ମାନ୍ୟତା ଦେଇ ,ଆମେ ଜ୍ଞାନାର୍ଜନ ପାଇଁ ପ୍ରୟାସ ମଧ କରିବୁ । ଯଥା : ଭାମତୀ ଟୀକା, ଉଦୁମ୍ବର ଟୀକା, ଶାରୀରିକ ମୀମାଂସା, ବୟାସକ ନ୍ୟାୟ ଇତ୍ୟାଦି । ଖାଲି ସେତିକିରେ ଶାସ୍ତ୍ର ବ୍ୟାଖ୍ୟାନ ସୀମିତ ହୋଇନାହିଁ ଅଦ୍ୟାବଧି ଜ୍ଞାନାନ୍ୱେଷୀମାନଙ୍କୁ ଯେଉଁ ଆଚାର୍ଯ୍ୟମାନେ ପ୍ରୟାସ ପୂର୍ବକ ବୋଧ କରାଇବାପାଇଁ ଚେଷ୍ଟା କରିଛନ୍ତି ତଦୀୟ ଅନୁଷ୍ଠାନରେ ତଦନୁରୂପେ ଏକ ଭାଷ୍ୟରୂପୀ ଟୀକା ନିଜସ୍ୱ ନାମରେ ନାମିତ ହୋଇ ପ୍ରକାଶିତ ମଧ ହୋଇଛି ।

ଯଦିଓ ଗୁରୁଗୃହରେ ଶିଷ୍ୟଗଣ ଆଚାର୍ଯ୍ୟ ଶିକ୍ଷକଙ୍କ ନିକଟକୁ ଯାଇ ନାନା ବିଷୟରେ ଶିକ୍ଷା ଗ୍ରହଣ କରୁଥିବା ଅବସରରେ ବିସ୍ତାରିତ ଆଲୋଚନା ପୂର୍ବକ ଯେଉଁ ପାଠକୁ ସ୍ମରଣ, ମନନଯୋଗ୍ୟ କରୁଥିଲେ ତାହାକୁ ସାଂକେତିକ ଶବ୍ଦ ସାହାଯ୍ୟରେ ସଂଗ୍ରହକରି ପରବର୍ତ୍ତୀ କାଳରେ ତର୍ଜମା ପୂର୍ବକ ଅନୁଶୀଳନର ପ୍ରୟାସ କରିବା ଏକ ଚିରାଚରିତ ପ୍ରଥା । ତାହା ଆମକୁ ଏହି ଗ୍ରନ୍ଥାରମ୍ଭରେ ସୁସ୍ପଷ୍ଟ ହୋଇଯାଉଛି । ସୂତ୍ର ଦ୍ୱାରା ଅଧିତ ବା ଜ୍ଞାତବ୍ୟ ଜ୍ଞାନର ବିଷୟବସ୍ତୁ ଗୁଡ଼ିକର ସନ୍ଧାନ କରାଯାଏ । କାଳକ୍ରମେ ଶାସ୍ତ୍ରର ବିସ୍ତାରିତ ଅଂଶକୁ ସ୍ମରଣ ରଖିବାପାଇଁ ଯେଉଁ ସହାୟକ ପଦ ବା ସାଂକେତିକ ଶବ୍ଦର ଆବଶ୍ୟକ ନେଇ ଆମେ ଆମର ଅଧିତ ଜ୍ଞାନକୁ ସୁନିୟୋଜିତ କରୁ ଠିକ୍ ସେହିଭଳି ଏହି ବ୍ରହ୍ମସୂତ୍ର ଗ୍ରନ୍ଥଟି ସଂଯୋଜିତ ହୋଇଛି । ବୃହତ୍ ଜ୍ଞାନକୁ ସଂକ୍ଷିପ୍ତାକାରରେ ଚିନ୍ତାଦ୍ୟୋତକ ଭାବରେ ସଂଯୋଜିତ କରାଯାଇଛି ।

ଅତଃ ଶାସ୍ତ୍ରର ଗଭୀରତାକୁ ମାନ୍ୟତା ଦେଇ କେବଳମାତ୍ର ସୂତ୍ରାର୍ଥ ପ୍ରସ୍ତୁତ କରାଯାଇ ଉକ୍ତ ଗ୍ରନ୍ଥରେ ସନ୍ନିବେଶିତ କରାଗଲା । ସୂତ୍ରର ବାସ୍ତବତାକୁ ରୂପାୟନ କରିବାପାଇଁ ଏହି ସାମାନ୍ୟ ଅର୍ଥଯୁକ୍ତ ବାକ୍ୟଗୁଡ଼ିକ ମାଧମରେ ଆବଶ୍ୟକତା ପୂରଣ କରିପାରିଲେ ପାଠକ ସ୍ୱାଦ ଆସ୍ୱାଦନପାଇଁ ନିଜକୁ ସକ୍ଷମ କରିପାରିବ । ତେଣୁ ସଂକ୍ଷିପ୍ତ ଭାବରେ ଗ୍ରନ୍ଥଟିକୁ ପ୍ରକାଶ କରାଯାଇଛି । ତ୍ରୁଟି ଦର୍ଶନ ପାଠକୀୟ ଅଭିରୁଚି ନହୋଇ ବାସ୍ତବ ଜ୍ଞାନାର୍ଜନ ହୋଇପାରିଲେ ଶ୍ରମ ସାର୍ଥକ ହେବ । ମାତ୍ର ମାର୍ଜନା ନିମନ୍ତେ ମତାମତ ସର୍ବାଦୌ ଗ୍ରହଣୀୟ ।

ସମ୍ପାଦକ

# ସୂଚୀପତ୍ର

ଓଁ ଶ୍ରୀଃ

ଶ୍ରୀପରମାତ୍ମନେ ନମଃ

ଶ୍ରୀମନ୍ମହର୍ଷି ବ୍ୟାସଦେବ ବିରଚିତ

# ବ୍ରହ୍ମ-ସୂତ୍ର

## ପ୍ରଥମ ଅଧ୍ୟାୟ-ପ୍ରଥମ ପାଦ

- **ଜିଜ୍ଞାସାଧିକରଣମ୍ ।। ସୂ.୧**

» **ଅଥାତୋ ବ୍ରହ୍ମଜିଜ୍ଞାସା ।। ୧ ।।**

ଏବେଠାରୁ ବ୍ରହ୍ମବିଷୟରେ ବିଚାର (ଆରମ୍ଭ କରାଯାଉଛି) ।

- **ଜନ୍ମାଦ୍ୟଧିକରଣମ୍ ।। ସୂ.୨**

» **ଜନ୍ମାଦ୍ୟସ୍ୟ ଯତଃ ।। ୨ ।।**

ଯେଉଁଥିରୁ ଏହି ଜଗତର ଜନ୍ମ ଆଦି (ଉତ୍ପତ୍ତି, ସ୍ଥିତି ଓ ପ୍ରଳୟ) ହୋଇଅଛି, ତାହା ବ୍ରହ୍ମ ଅଟେ ।

- **ଶାସ୍ତ୍ରଯୋନିତ୍ୱାଧିକରଣମ୍ ।। ସୂ. ୩**

» **ଶାସ୍ତ୍ରଯୋନିତ୍ୱାତ୍ ।। ୩ ।।**

ଶାସ୍ତ୍ରରେ (ବେଦରେ) ସେହି ବ୍ରହ୍ମଙ୍କୁ ଜଗତର କାରଣ ବା ଜଗତର ଯୋନି ଅର୍ଥାତ୍ ଉତ୍ପତ୍ତି ଭାବରେ ବତାଯାଇଛି, ଏଣୁ (ତାଙ୍କୁ ଜଗତର କାରଣ ମାନିବା ଉଚିତ ହେବ) ।

- **ସମନ୍ୱୟାଧିକରଣମ୍ ।। ସୂ. ୪**

» **ତତ୍ତୁ ସମନ୍ୱୟାତ୍ ।। ୪ ।।**

ସେହି ବ୍ରହ୍ମ ସମସ୍ତ ଜଗତରେ ପୂର୍ଣ୍ଣ ରୂପେ ଅନୁଗତ ବା ବ୍ୟାପ୍ତ ହୋଇଥିବା କାରଣରୁ ଉପାଦାନ ମଧ୍ୟ ଅଟନ୍ତି ।

- **ଈକ୍ଷତ୍ୟଧିକରଣମ୍ ।। ସୂ: ୫-୧୧**

» **ଈକ୍ଷତେର୍ନାଶବ୍ଦମ୍ ।। ୫ ।।**

ଶ୍ରୁତିରେ 'ଈକ୍ଷ' ଧାତୁର ପ୍ରୟୋଗ ହୋଇଥିବା କାରଣରୁ ଶବ୍ଦ-ପ୍ରମାଣ-ଶୂନ୍ୟ ପ୍ରଧାନ (ତ୍ରିଗୁଣାତ୍ମିକା ଜଡ ପ୍ରକୃତି) ଜଗତର କାରଣ ନୁହେଁ ।

» **ଗୌଣଶ୍ଚେନ୍ନାତ୍ମଶବ୍ଦାତ୍ ।। ୬ ।।**

ଯଦି କୁହକି ଈକ୍ଷଣ ଶବ୍ଦର ପ୍ରୟୋଗ (ପ୍ରକୃତି ପାଇଁ) ଗୌଣ, ତେବେ ତାହା ଠିକ୍ ନୁହେଁ । କାହିଁକି ନାଁ ସେଠାରେ ଆତ୍ମା ଶବ୍ଦର ବ୍ୟବହାର ହୋଇଛି ।

» **ତନ୍ନିଷ୍ଠସ୍ୟ ମୋକ୍ଷୋପଦେଶାତ୍ ।। ୭ ।।**

ତହିଁରେ ନିଷ୍ଠା ଥିବା ବ୍ୟକ୍ତି ପାଇଁ ମୋକ୍ଷର ଉପଦେଶ ସନ୍ନିବେଶିତ ହୋଇଛି । (ଏଇଥିପାଇଁ ପ୍ରକୃତିକୁ ଜଗତ୍‌କାରଣ ଭାବରେ ମାନ୍ୟତା ଦିଆଯାଇପାରିବ ନାହିଁ ।)

» **ହେୟତ୍ୱାବଚନାଚ୍ଚ ।। ୮ ।।**

ତ୍ୟାଗଯୋଗ୍ୟ ବତାଯାଇନଥିବା କାରଣରୁ ମଧ୍ୟ ।(ଉକ୍ତ ପ୍ରସଙ୍ଗରେ ଆତ୍ମା ଶବ୍ଦ ପ୍ରକୃତିବାଚକ ନୁହେଁ) ।

» **ସ୍ୱାପ୍ୟୟାତ୍ ।। ୯ ।।**

ନିଜ ସ୍ୱରୂପରେ ଲୀନ ହେଉଥିବାରୁ । (ସତ୍ ଶବ୍ଦ ମଧ୍ୟ ଜଡ ପ୍ରକୃତିବାଚକ ହୋଇନପାରେ ।)

» **ଗତିସାମାନ୍ୟାତ୍ ।। ୧୦ ।।**

ସମସ୍ତ ଉପନିଷଦର ବାକ୍ୟମାନେ ସମାନରୂପରେ ଚେତନକୁ ହିଁ ଜଗତର କାରଣରୂପେ ବତାଇଛନ୍ତି । (ଏଣୁ ଜଡପ୍ରକୃତିକୁ ଜଗତର କାରଣ ଭାବରେ ମାନିହେବ ନାହିଁ ।)

» **ଶ୍ରୁତତ୍ୱାଚ୍ଚ ।। ୧୧ ।।**

ଶ୍ରୁତିରେ ମଧ୍ୟ ଏହା ସର୍ବତ୍ର କୁହାଯାଇଛି । (ଏଣୁ ପରବ୍ରହ୍ମ ପରମେଶ୍ୱର ଜଗତର କାରଣ ଭାବେ ସିଦ୍ଧ ଅଟନ୍ତି ।)

● **ଆନନ୍ଦମୟାଧିକରଣମ୍ । ସୂ.୧୨-୧୯**

» **ଆନନ୍ଦମୟୋଽଭ୍ୟାସାତ୍ ।। ୧୨ ।।**

ଶ୍ରୁତିରେ ବାରମ୍ଭାର ଆନନ୍ଦଶବ୍ଦ ବ୍ରହ୍ମଙ୍କ ପାଇଁ ପ୍ରୟୋଗ ହୋଇଥିବା କାରଣରୁ । (ଏହି ଆନନ୍ଦମୟ ଶବ୍ଦ ପରବ୍ରହ୍ମ ପରମେଶ୍ୱର ବାଚକ ଅଟେ ।)

» **ବିକାରଶବ୍ଦାନ୍ନେତି ଚେନ୍ନ ପ୍ରାଚୁର୍ଯ୍ୟାତ୍ ।। ୧୩ ।।**

ଯଦି କହିବ ମୟଟ୍ ପ୍ରତ୍ୟୟ ହେଲେ ବିକାର ବୋଧକ ହୁଏ, ତାହା ଠିକ୍ ନୁହେଁ କାରଣ ତାହା ପ୍ରାଚୁର୍ଯ୍ୟ ବୋଧକ ।(ଏଠାରେ ପ୍ରଚୁରତା ବୋଧକ ବିକାରର ନୁହେଁ ।)

» **ତଦ୍ଧେତୁବ୍ୟପଦେଶାଚ୍ଚ ।। ୧୪ ।।**

ଉପନିଷଦରେ ବ୍ରହ୍ମଙ୍କୁ ସେହି ଆନନ୍ଦର କାରଣ ବୋଲି କୁହାଯାଇଛି । (ଏଣୁ ଏଠାରେ ମଧ୍ୟ ମୟଟ୍ ପ୍ରତ୍ୟୟ ବିକାର ଅର୍ଥ ବୋଧକ ନୁହେଁ ।)

» **ମାନ୍ତ୍ରବର୍ଣ୍ଣିକମେବ ଚ ଗୀୟତେ ।।୧୫।।**

ଯାହା ମନ୍ତ୍ରାକ୍ଷରରେ ବର୍ଣ୍ଣିତ ହୋଇଛି, ତାହା ମଧ୍ୟ ଗାୟନ କରାଯାଇଛି । (ଏଠାରେ ସେହି ବ୍ରହ୍ମଙ୍କୁ ଗାୟନ ମାଧ୍ୟମରେ ପ୍ରତିପାଦନ କରାଯାଇଛି । ତେଣୁ ସେ ଆନନ୍ଦମୟ ବ୍ରହ୍ମ ଅଟନ୍ତି ।)

» **ନେତରୋଽନୁପପତ୍ତେଃ ।। ୧୬ ।।**

ବ୍ରହ୍ମ ଭିନ୍ନ ଜୀବାତ୍ମା କଦାପି ଆନନ୍ଦମୟ ହୋଇପାରିବ ନାହିଁ, କାରଣ ଏହା ପୂର୍ବାପର ପ୍ରସଙ୍ଗ ବିଚାରକଲେ ସିଦ୍ଧ ହେଉନାହିଁ ।

» **ଭେଦବ୍ୟପଦେଶାଚ୍ଚ ।। ୧୭ ।।**

ଜୀବାତ୍ମା ଏବଂ ପରମାତ୍ମାଙ୍କୁ ପରସ୍ପର ଠାରୁ ଅଲଗା ଭାବରେ ବତାଯାଇଛି, (ଏଣୁ ଆନନ୍ଦମୟ ଶବ୍ଦ ଜୀବାତ୍ମା ବାଚକ ହୋଇପାରିବ ନାହିଁ ) ।

» **କାମାଚ୍ଚ ନାନୁମାନାପେକ୍ଷା ।। ୧୮ ।।**

ଆନନ୍ଦ ବ୍ରହ୍ମବାଚକ ଏବଂ ତାହା ଏଠାରେ ଠିକ୍ ଭାବରେ ଅନୁମାନ କରାଯାଇପାରିବ ନାହିଁ । (ଆନନ୍ଦମୟରେ କାମନା କଥା ଉତ୍ଥାପିତ ହେବାରୁ ଅନୁମାନ-କଳ୍ପିତ ଜଡ ପ୍ରକୃତିକୁ ଆନନ୍ଦମୟ ଶବ୍ଦ ଭାବରେ ଗ୍ରହଣ କରାଯିବାର ଆବଶ୍ୟକତା ନାହିଁ ।)

» **ଅସ୍ମିନ୍ନସ୍ୟ ଚ ତଦ୍ୟୋଗଂ ଶାସ୍ତି ।। ୧୯।।**

ଏହା ବ୍ୟତୀତ ଏହି ପ୍ରକରଣରେ (ଶ୍ରୁତି), ଏହି ଜୀବାତ୍ମାର ସେହି ଆନନ୍ଦମୟ ସହିତ ସଂଯୁକ୍ତ ହେବା ବତାଉଅଛି । (ଏଣୁ ଜଡତତ୍ତ୍ୱ ଅଥବା ଜୀବାତ୍ମା ଆନନ୍ଦମୟ ନୁହଁନ୍ତି ।)

- **ଅନ୍ତରଧିକରଣମ୍ । ସୂ. ୨୦-୨୧**

» **ଅନ୍ତସ୍ତଦ୍ଧର୍ମୋପଦେଶାତ୍ ।। ୨୦ ।।**

ଅନ୍ତଃସ୍ଥଳ ଅର୍ଥାତ୍ ହୃଦୟମଧରେ ବୋଲି ସେହି ବ୍ରହ୍ମଙ୍କର ଉପଦେଶ ଦିଆଯାଇଛି । (ହୃଦୟ ଭିତରେ ବିରାଜମାନ କରିଥିବା ବିଜ୍ଞାନମୟ ତଥା ସୂର୍ଯ୍ୟମଣ୍ଡଳ ମଧସ୍ଥିତ ହିରଣ୍ମୟ ପୁରୁଷ ବ୍ରହ୍ମ ଅଟନ୍ତି, କାହିଁକି ନାଁ ସେଥିରେ ସେହି ବ୍ରହ୍ମଙ୍କର ଧର୍ମୋପଦେଶ ଦିଆଯାଇଛି ।)

» **ଭେଦବ୍ୟପଦେଶାଚ୍ଚାନ୍ୟଃ ।। ୨୧ ।।**

ତଥା ଭେଦ ସମ୍ପର୍କିତ କଥା କୁହାଯାଇଥିବାରୁ ଆଦିତ୍ୟଙ୍କୁ ଅଧିଷ୍ଠାତା ଦେବତାଙ୍କ ଠାରୁ ଭିନ୍ନ ବୋଲି ବୁଝିବାକୁ ହେବ ।

- **ଆକାଶାଧିକରଣମ୍ । ସୂ.୨୨**

» **ଆକାଶସ୍ତଲ୍ଲିଙ୍ଗାତ୍ ।। ୨୨ ।।**

ସେଠାରେ ଆକାଶ ଶବ୍ଦ ପରବ୍ରହ୍ମ ପରମାତ୍ମାବାଚକ ଅଟେ । କାହିଁକି ନାଁ ଉକ୍ତ ମନ୍ତ୍ରରେ ଯେଉଁ ଲକ୍ଷଣ ବତାଯାଇଛି, ତାହା ସେହି ବ୍ରହ୍ମଙ୍କର ଅଟେ ।

- **ପ୍ରାଣାଧିକରଣମ୍ । ସୂ.୨୩**

» **ଅତ ଏବ ପ୍ରାଣଃ ।। ୨୩ ।।**

ଏଣୁ ଅର୍ଥାତ୍ ଶ୍ରୁତିରେ କୁହାଯାଇଥିବା ଲକ୍ଷଣ ବ୍ରହ୍ମଙ୍କଠାରେ ହିଁ ସମ୍ଭବ । ସେଇଥିପାଇଁ ପ୍ରାଣ ମଧ ବ୍ରହ୍ମବାଚକ ।

• **ଜ୍ୟୋତିଶ୍ଚରଣାଧିକରଣମ୍ । ସୂ.୨୪-୨୭**

» **ଜ୍ୟୋତିଶ୍ଚରଣାଭିଧାନାତ୍ ।।୨୪।।**

ଏହି ପ୍ରସଙ୍ଗରେ ଉକ୍ତ ଜ୍ୟୋତିଙ୍କର ଚାରି ପାଦର କଥା ଉଠୁଥିବାରୁ ଜ୍ୟୋତିଃ ଶବ୍ଦ ବ୍ରହ୍ମବାଚକ ଅଟେ ।

» **ଛନ୍ଦୋଽଭିଧାନାନ୍ନେତି ଚେନ୍ନ ତଥା ଚେତୋଽର୍ପଣ ନିଗଦାତ୍ତଥା ହି ଦର୍ଶନମ୍ ।। ୨୫ ।।**

ଯଦି କହ ଗାୟତ୍ରୀ ଛନ୍ଦ କୁହାଯାଇଥିବା କାରଣରୁ ବ୍ରହ୍ମଙ୍କର ଚାରିଗୋଟି ପାଦ ବର୍ଣ୍ଣନା ହୋଇନାହିଁ, ତେବେ ତାହା ଠିକ୍ ନୁହେଁ । ଏହି ପ୍ରକାରର ବର୍ଣ୍ଣନା ଦ୍ୱାରା ଚିତ୍ତର ସମର୍ପଣକଥା କୁହାଯାଇଛି । ଏହି ବର୍ଣ୍ଣନା ଅନ୍ୟତ୍ର ମଧ୍ୟ ଦେଖାଯାଏ ।

» **ଭୂତାଦିପାଦବ୍ୟପଦେଶୋପପତ୍ତେଶ୍ଚୈବମ୍ ।।୨୬**

ଭୂତ ଆଦିଙ୍କୁ ପାଦ ବୋଲି କୁହାଯାଇଥିବା ଯୁକ୍ତି ସଙ୍ଗତ ଅଟେ । (ଏଠାରେ ବ୍ରହ୍ମଙ୍କୁ ଗାୟତ୍ରୀଙ୍କ ନାମରେ କୁହାଯାଇଛି, ଏହିଭଳି ମାନିବାକୁ ହେବ ।)

» **ଉପଦେଶଭେଦାନ୍ନେତି ଚେନ୍ନୋଭୟସ୍ମିନ୍ନପ୍ୟବିରୋଧାତ୍ ।। ୨୭ ।।**

ଯଦି କହ ଉପଦେଶରେ ଭେଦ ଥିବା କାରଣରୁ ଗାୟତ୍ରୀ ଶବ୍ଦ ବ୍ରହ୍ମବାଚକ ନୁହେଁ, ତାହା ଠିକ୍ ନୁହେଁ । ଉଭୟ ପ୍ରକାରର ବର୍ଣ୍ଣନା ପରିଲକ୍ଷିତ ହେଲେ ମଧ କିଛି ହେଲେ ବିରୋଧଭାବ ନାହିଁ ।

• **ପ୍ରତର୍ଦନାଧିକରଣମ୍ । ସୂ.୨୮-୩୧**

» **ପ୍ରାଣସ୍ତଥାନୁଗମାତ୍ ।। ୨୮ ।।**

ପ୍ରାଣଶବ୍ଦ (ଏଠାରେ ମଧ ବ୍ରହ୍ମବାଚକ ଅଟେ) ଯେ ବ୍ରହ୍ମ, ଏହା ପୂର୍ବାପର ପ୍ରସଙ୍ଗକୁ ବିଚାରକଲେ ବୁଝାଯାଏ ।

» **ନ ବକ୍ତୁରାତ୍ମୋପଦେଶାଦିତି ଚେଦଧ୍ୟାତ୍ମସମ୍ବନ୍ଧଭୂମାହ୍ୟସ୍ମିନ୍ ।।୨୯।।**

ଯଦି କୁହ ବକ୍ତା(ଇନ୍ଦ୍ର)ଙ୍କର (ଉଦ୍ଦେଶ୍ୟ) ନିଜକୁ ପ୍ରାଣ ଭାବରେ ଅଭିହିତ କରିବାର ଅଭିଳାଷ ଥାଏ, ତେବେ ତାହା ନୁହେଁ କାରଣ ପ୍ରାଣଶବ୍ଦ ବ୍ରହ୍ମବାଚକ ହୋଇନପାରେ । ଏହି କଥା ଠିକ୍ ନୁହେଁ କାହିଁକି ନାଁ ଏହି ପ୍ରକରଣରେ ଅଧ୍ୟାତ୍ମସମ୍ବନ୍ଧୀ ଉପଦେଶର ବହୁଳତା ପରିଲକ୍ଷିତ ହୁଏ ।

» ଶାସ୍ତ୍ରଦୃଷ୍ଟ୍ୟା ତୂପଦେଶୋ ବାମଦେବବତ୍ ।।୩୦।।

ଏଠାରେ ଇନ୍ଦ୍ର ନିଜକୁ ପ୍ରାଣ ବତାଇବା ମଧ ବାମଦେବଙ୍କ ଭଳି (କେବଳ ଶାସ୍ତ୍ରସମ୍ମତ) ଅଟେ ।

» ଜୀବମୁଖ୍ୟପ୍ରାଣଲିଙ୍ଗାନ୍ନେତି ଚେନ୍ନୋପାସାତ୍ରୈ-ବିଧ୍ୟାଦାଶ୍ରିତତ୍ୱାଦିହ-ତଦ୍ୟୋଗାତ୍ ।। ୩୧ ।।

ଯଦି କହିବ କି, ଜୀବାତ୍ମା ଏବଂ ପ୍ରାଣର ଲକ୍ଷଣ ମିଳୁଥିବାରୁ ପ୍ରାଣ ବ୍ରହ୍ମବାଚକ ହୋଇନପାରେ, ତେବେ ତାହା ଠିକ୍ ନୁହେଁ, କାରଣ ଏହିଭଳି କହିଲେ ତ୍ରିବିଧ ଉପାସନା ପ୍ରସଙ୍ଗ ଉଠୁଛି । ସବୁଲକ୍ଷଣ ବ୍ରହ୍ମଙ୍କଠାରେ ଆଶ୍ରିତ ଅଟେ । ଏହି ପ୍ରସଙ୍ଗରେ ବ୍ରହ୍ମଙ୍କର ଲକ୍ଷଣ ମଧ କୁହାଯାଇଛି । (ଅର୍ଥାତ୍ ପ୍ରାଣଶବ୍ଦ ବ୍ରହ୍ମବାଚକ ଅଟେ ।)

ଇତି ମହର୍ଷିବ୍ୟାସବିରଚିତେ ବ୍ରହ୍ମସୂତ୍ରେ

ପ୍ରଥମାଧ୍ୟାୟସ୍ୟ ପ୍ରଥମଃ ପାଦଃ ।। ୧ ।।

# ଦ୍ୱିତୀୟ ପାଦ

• ସର୍ବତ୍ର ପ୍ରସିଦ୍ଧ୍ୟଧିକରଣମ୍ । ସୂ.୧-୮

» ସର୍ବତ୍ର ପ୍ରସିଦ୍ଧୋପଦେଶାତ୍ ।। ୧ ।।

ବେଦାନ୍ତବାକ୍ୟରେ ସର୍ବତ୍ର ଶ୍ରୁତିପ୍ରସିଦ୍ଧ ପରବ୍ରହ୍ମଙ୍କର ଉପଦେଶ ଦିଆଯାଇଥିବାରୁ ସେ ବ୍ରହ୍ମ ହିଁ ଅଟନ୍ତି ।

» ବିବକ୍ଷିତଗୁଣୋପପତ୍ତେଶ୍ଚ ।। ୨ ।।

ଶ୍ରୁତିରେ ବର୍ଣ୍ଣିତ ଗୁଣମାନଙ୍କର ସଙ୍ଗତି ପରବ୍ରହ୍ମଙ୍କ ଠାରେ ସଂଘଟିତ ହେଉଛି ।

» ଅନୁପପତ୍ତେସ୍ତୁ ନ ଶାରୀରଃ ।। ୩ ।।

ପରନ୍ତୁ ଜୀବାତ୍ମା ଠାରେ ଶ୍ରୁତିବର୍ଣ୍ଣିତ ଗୁଣମାନଙ୍କର ସଙ୍ଗତି ହେଉନଥିବା କାରଣରୁ ଜୀବାତ୍ମା ଉପାସ୍ୟ ଦେବତା ନୁହଁନ୍ତି ।

» କର୍ମକର୍ତ୍ତୃବ୍ୟପଦେଶାଚ୍ଚ ।। ୪ ।।

ଉପାସ୍ୟଦେବତାଙ୍କୁ ପ୍ରାପ୍ତି କ୍ରିୟାର କର୍ମ ବୋଲି କୁହାଯାଇଛି ଏବଂ ଜୀବାତ୍ମାଙ୍କୁ ପ୍ରାପ୍ତି କ୍ରିୟାର କର୍ତ୍ତା ବୋଲି କୁହାଯାଇଛି । (ତେଣୁ ଜୀବାତ୍ମା ଉପାସ୍ୟ ହୋଇପାରିବ ନାହିଁ ।)

» ଶବ୍ଦବିଶେଷାତ୍ ।। ୫ ।।

ଶବ୍ଦ ବିଶେଷରେ ଭେଦଥିବାରୁ ଏହା ସିଦ୍ଧ ହେଉଛି କି ଏଠାରେ ଉପାସ୍ୟଦେବତା ଜୀବାତ୍ମା ନୁହଁନ୍ତି ।

» ସ୍ମୃତେଶ୍ଚ ।। ୬ ।।

ସ୍ମୃତିଶାସ୍ତ୍ରରେ ମଧ ତାହା ଅଛି ।

» ଅର୍ଭକୌକସ୍ତ୍ୱାତ୍ତଦ୍ବ୍ୟପଦେଶାଚ୍ଚ ନେତି ଚେନ୍ନ ନିଚାଯ୍ୟତ୍ୱାଦେବଂ ବ୍ୟୋମବଚ୍ଚ ।। ୭ ।।

ଛୋଟ ସ୍ଥାନରେ ଥିବାରୁ ଏହା ବ୍ରହ୍ମ ନୁହେଁ କହିବା ଠିକ୍ ହେବନାହିଁ । ହୃଦ୍‌ଦେଶରେ

ଥିବାରୁ ତାଙ୍କ ବିଷୟରେ ଏଭଳି କୁହାଯାଇଛି । କିନ୍ତୁ ସେ ଆକାଶ ଭଳି ସର୍ବବ୍ୟାପକ ଅଟନ୍ତି ।

» **ସମ୍ଭୋଗପ୍ରାପ୍ତିରିତି ଚେନ୍ନ ବୈଶେଷ୍ୟାତ୍ ।। ୮।।**

ସୁଖ-ଦୁଃଖ ଭୋଗ ପାଇବା କଥା ଠିକ୍ ନୁହେଁ । ଯଦି କୁହକି, ସମସ୍ତଙ୍କ ହୃଦୟରେ ସ୍ଥିତ ହୋଇଥିବାରୁ, ଚେତନ ହୋଇଥିବାରୁ ସୁଖ-ଦୁଃଖ ଭୋଗହେବ, ତେବେ ତାହା ଠିକ୍ ନୁହେଁ । କାହିଁକି ନାଁ ଜୀବାତ୍ମା ଅପେକ୍ଷା ସେହି ପରବ୍ରହ୍ମଙ୍କ ଠାରେ ବିଶେଷତା ରହିଛି ।

- **ଅତାଧିକରଣମ୍ । ସୂ.୯-୧୦**

» **ଅତ୍ତା ଚରାଚରଗ୍ରହଣାତ୍ ।। ୯ ।।**

ଚର ଏବଂ ଅଚର ସମସ୍ତଙ୍କୁ ଆହାର ରୂପେ ଗ୍ରହଣ କରୁଥିବା ତତ୍ତ୍ୱ । (ଏଭଳି କରୁଥିବାରୁ ଅର୍ଥାତ୍ ପ୍ରଳୟକାଳରେ ସେଗୁଡିକ ବିଲୀନ କରାଉଥିବାରୁ ସେହି ପରବ୍ରହ୍ମ ପରମେଶ୍ୱର ହିଁ ଅଟନ୍ତି ।)

» **ପ୍ରକରଣାଚ୍ଚ ।। ୧୦ ।।**

ପ୍ରକରଣରୁ ମଧ ଏହା ସିଦ୍ଧ ହେଉଛି ।

- **ଗୁହାପ୍ରବିଷ୍ଟାଧିକରଣମ୍ । ସୂ.୧୧-୧୨**

» **ଗୁହାଂ ପ୍ରବିଷ୍ଟାବାତ୍ମାନୌ ହି ତଦ୍ଦର୍ଶନାତ୍ ।। ୧୧ ।।**

ହୃଦୟଗୁମ୍ଫାରେ ଜୀବାତ୍ମା ଓ ପରମାତ୍ମା ଉଭୟ ପ୍ରବିଷ୍ଟ ହୋଇଛନ୍ତି, ଏହିଭଳି ଶ୍ରୁତିରେ ନିର୍ଦ୍ଦେଶ ମିଳେ ।

» **ବିଶେଷଣାଚ୍ଚ ।। ୧୨ ।।**

ଭିନ୍ନ ଭିନ୍ନ ବିଶେଷଣ ଥିବାରୁ ମଧ ତାଙ୍କୁ ଉଭୟ ମାନିବା ଠିକ୍ ହେବ ।

- **ଅନ୍ତରଧିକରଣମ୍ । ସୂ.୧୩ - ୧୭**

» **ଅନ୍ତର ଉପପତ୍ତେଃ ।। ୧୩ ।।**

ଚକ୍ଷୁ ଅଭ୍ୟନ୍ତରରେଥିବା ପୁରୁଷ ହେଉଛନ୍ତି ବ୍ରହ୍ମ । ସେହି ବ୍ରହ୍ମଙ୍କୁ ଏହିଭଳି ଭାବରେ ମାନିବାଦ୍ୱାରା ପୂର୍ବାପର ସଙ୍ଗତି ସିଦ୍ଧ ହେଉଛି ।

» **ସ୍ଥାନାଦିବ୍ୟପଦେଶାଚ୍ଚ ।। ୧୪ ।।**

ବିଭିନ୍ନ ସ୍ଥାନ ନିର୍ଦ୍ଦେଶିତ ହୋଇଥିବାରୁ ଅର୍ଥାତ୍ ବ୍ରହ୍ମଙ୍କ ପାଇଁ ଅନେକ ସ୍ଥଳରେ ସ୍ଥାନର ନିର୍ଦ୍ଦେଶ କରାଯାଇଥିବାରୁ ସେ ନେତ୍ରାନ୍ତବର୍ତ୍ତୀ ପୁରୁଷ ବା ବ୍ରହ୍ମ ଅଟନ୍ତି ।

» **ସୁଖବିଶିଷ୍ଟାଭିଧାନାଦେବ ଚ ।। ୧୫ ।।**

ତାହାଙ୍କୁ ସୁଖ ସମ୍ପନ୍ନ ବୋଲି କୁହାଯାଇଛି ।

» **ଶ୍ରୁତୋପନିଷତ୍କଗତ୍ୟଭିଧାନାଚ୍ଚ ।।୧୬।।**

ଉପନିଷଦକୁ ଶ୍ରବଣ କରିଥିବା ବ୍ରହ୍ମବେତ୍ତାଙ୍କ ଗତିରୁ ଜଣାଯାଉଛି । ଅର୍ଥାତ୍ ରହସ୍ୟ ବିଜ୍ଞାନକୁ ଶ୍ରବଣ କରିନେଇଥିବା ବ୍ରହ୍ମବେତ୍ତାଙ୍କର ଯେଉଁ ଗତି ବତାଯାଇଛି, ସେହି ଗତି ଏହି ପୁରୁଷକୁ ଜାଣିବାବାଲାଙ୍କର ମଧ କୁହାଯାଇଛି । ଏଥିରୁ ଏହା ଜ୍ଞାତ ହେଉଛି କି, ନେତ୍ରରେ ଦେଖାଯାଉଥିବା ପୁରୁଷ ଏଠାରେ ବ୍ରହ୍ମ ହିଁ ଅଟନ୍ତି ।

» **ଅନବସ୍ଥିତେରସମ୍ଭବାଚ୍ଚ ନେତରଃ ।। ୧୭ ।।**

ନେତ୍ରରେ ନିରନ୍ତର ସ୍ଥିତି ଅନ୍ୟ କାହାର ନଥିବାରୁ, ଅମୃତତ୍ତ୍ୱ ଆଦି ଗୁଣସମ୍ଭବ ହୋଇ ନଥିବାରୁ ଅନ୍ୟ କେହି ତାହା ନୁହଁନ୍ତି ।

● **ଅନ୍ତର୍ଯ୍ୟାମ୍ୟଧିକରଣମ୍ । ସୂ.୧୮-୨୦**

» **ଅନ୍ତର୍ଯ୍ୟାମ୍ୟଧିଦୈବାଦିଷୁ ତଦ୍ଧର୍ମବ୍ୟପଦେଶାତ୍ ।। ୧୮।।**

ଆଧିଦୈବିକ ଓ ଆଧାତ୍ମିକ ଆଦି ସମସ୍ତ ବସ୍ତୁରେ ଯାହାଙ୍କୁ ଅନ୍ତର୍ଯ୍ୟାମୀ ବୋଲି କୁହାଯାଇଛି, ତାଙ୍କର ଏହା ଧର୍ମ ବୋଲି ବର୍ଣ୍ଣିତ ହୋଇଛି ।

» **ନ ଚ ସ୍ମାର୍ତ୍ତମତଦ୍ଧର୍ମାଭିଳାପାତ୍ ।।୧୯।।**

ସାଂଖ୍ୟସ୍ମୃତି ଦ୍ୱାରା ପ୍ରତିପାଦିତ ପ୍ରଧାନ ଜଡପ୍ରକୃତି ମଧ ଅନ୍ତର୍ଯ୍ୟାମୀ ନୁହଁନ୍ତି କାହିଁକି ନା ଏହି ପ୍ରକରଣରେ ବତାଯାଇଛି ଦ୍ରଷ୍ଟାପଣ ଆଦି ଧର୍ମ ପ୍ରକୃତିର ନୁହେଁ ।

» **ଶାରୀରଶ୍ଚୋଭୟେଽପି ହି ଭେଦେନୈନମଧୀୟତେ ।।୨୦।।**

ଶରୀରରେ ରହୁଥିବା ଜୀବାତ୍ମାକୁ ଅନ୍ତର୍ଯ୍ୟାମୀଙ୍କ ଠାରୁ ଭିନ୍ନ ମାନି ଉଭୟ

ଶାଖାର ଅଧ୍ୟୟନ କରିଥାନ୍ତି । ଶରୀରରେ ରହୁଥିବା ଜୀବାତ୍ମା ଅନ୍ତର୍ଯ୍ୟାମୀ ନୁହଁନ୍ତି । କାହିଁକି ନାଁ ମାଧନ୍ଦିନୀ ତଥା କାଣ୍ୱ ଉଭୟ ଶାଖାର ବ୍ୟକ୍ତି ସେହି ଜୀବାତ୍ମାକୁ ଅନ୍ତର୍ଯ୍ୟାମୀଙ୍କ ଠାରୁ ଭିନ୍ନ ମାନି ଅଧ୍ୟୟନ କରିଥାନ୍ତି ।

- **ଅଦୃଶ୍ୟତ୍ୱାଧିକରଣମ୍ । ସୂ.୨୧-୨୩**

» **ଅଦୃଶ୍ୟତ୍ୱାଦିଗୁଣକୋ ଧର୍ମୋକ୍ତେଃ ।।୨୧।।**

ଅଦୃଶ୍ୟ ଆଦିଗୁଣ ପରମେଶ୍ୱରଙ୍କୁ ବୁଝାଉଛି, ତାଙ୍କର ଅନ୍ୟାନ୍ୟ ଗୁଣମାନଙ୍କ ବିଷୟରେ ମଧ କୁହାଯାଉଛି କାହିଁକି ନାଁ ତାଙ୍କର ସର୍ବଜ୍ଞତା ଆଦି ଧର୍ମ ବର୍ଣ୍ଣିତ ଅଟେ ।

» **ବିଶେଷଣଭେଦବ୍ୟପଦେଶାଭ୍ୟାଂ ଚ ନେତରୌ ।। ୨୨**

ଭିନ୍ନ ଭିନ୍ନ ବିଶେଷଣ ଭେଦଥିବାରୁ ଜୀବାତ୍ମା ଏବଂ ପ୍ରକୃତି ଅଦୃଶ୍ୟତା ଆଦି ଗୁଣଯୁକ୍ତ ନ ହୋଇ ଜଗତ୍ କାରଣ ହୋଇପାରିବେ ନାହିଁ ।

» **ରୂପୋପନ୍ୟାସାଚ୍ଚ ।। ୨୩ ।।**

ପରମେଶ୍ୱରଙ୍କର ରୂପ ଶ୍ରୁତିରେ ବର୍ଣ୍ଣିତ ହୋଇଛି । ଶ୍ରୁତିରେ ତାଙ୍କର ନିଖିଳ ରୂପମୟ ବିରାଟ ସ୍ୱରୂପଙ୍କର ବର୍ଣ୍ଣନା କରାଯାଇଛି, ଏହାଦ୍ୱାରା ସେହି ପରମେଶ୍ୱର ସମସ୍ତ ଭୂତର କାରଣ ବୋଲି ସିଦ୍ଧ ହୁଅନ୍ତି ।

- **ବୈଶ୍ୱାନରାଧିକରଣମ୍ । ସୂ. ୨୪-୩୨**

» **ବୈଶ୍ୱାନରଃ ସାଧାରଣ ଶବ୍ଦବିଶେଷାତ୍ ।। ୨୪ ।।**

ବୈଶ୍ୱାନର ଶବ୍ଦ ପ୍ରୟୋଗ ଦ୍ୱାରା ପରମାର୍ଥ ବୋଧକ ବିଶେଷ ଶବ୍ଦ ପ୍ରୟୋଗରୁ ତାହା ଜଣାଯାଉଛି ।

» **ସ୍ମର୍ଯ୍ୟମାଣମନୁମାନଂ ସ୍ୟାଦିତି ।। ୨୫।।**

ସ୍ମୃତି ଶାସ୍ତ୍ରରେ ଯାହାଙ୍କର ବିରାଟରୂପ ବର୍ଣ୍ଣିତ ହୋଇଛି, ଶ୍ରୁତି ବଚନରୁ ଅନୁମାନକରି ସିଦ୍ଧ ହେଉଛି କି, ବୈଶ୍ୱାନର ହିଁ ପରମାତ୍ମା ।

» **ଶବ୍ଦାଦିଭ୍ୟୋଽନ୍ତଃପ୍ରତିଷ୍ଠାନାଚ୍ଚନ୍ନେତି ଚେନ୍ନତଥା ଦୃଷ୍ଟ୍ୟୁପଦେଶାଦସମ୍ଭବାତ୍ ପୁରୁଷମପି ଚୈନମଧୀୟତେ ।।୨୬**

ଶ୍ରୁତି ବଚନାନୁସାରେ ଶରୀର ଭିତରେ ଥିବା ହେତୁ ଉପଦେଶ ଦିଆଯାଇଥିବା କାରଣରୁ ଅସମ୍ଭବ ହେବାରୁ ପୁରୁଷ ନାମରେ ପଠିତ ହେଉଅଛି ।

» **ଅତ ଏବ ନ ଦେବତା ଭୂତଂ ଚ ।। ୨୭ ।।**

ଏହା ସିଦ୍ଧ ହେଉଛି କି, ସେହି ଦେବଗଣ ବା ଆକାଶ ଆଦି ଭୂତ ନୁହଁନ୍ତି ।

» **ସାକ୍ଷାଦପ୍ୟବିରୋଧଂ ଜୈମିନିଃ ।। ୨୮ ।।**

ବୈଶ୍ୱାନର ଶବ୍ଦ ଯେ ପରମେଶ୍ୱର ବୋଧକ, ଏଥିରେ କୌଣସି ବିରୋଧ ନାହିଁ ବୋଲି ଜୈମିନି ମହର୍ଷି କହନ୍ତି ।

» **ଅଭିବ୍ୟକ୍ତେରିତ୍ୟାଶ୍ମରଥ୍ୟଃ ।। ୨୯ ।।**

ଅଭିବ୍ୟକ୍ତି ହେତୁ କୌଣସି ଆପତ୍ତି ନାହିଁ ବୋଲି ଆଚାର୍ଯ୍ୟ ଆଶ୍ମରଥ୍ୟ ସ୍ୱୀକାର କରନ୍ତି । (ଭକ୍ତମାନଙ୍କ ଉପରେ ଅନୁଗ୍ରହ କରିବାପାଇଁ ଦେଶ-ବିଶେଷରେ ବ୍ରହ୍ମଙ୍କର ପ୍ରାକଟ୍ୟ ହୋଇଛି, ଏଣୁ କୌଣସି ପ୍ରକାରେ ବିରୋଧ ନାହିଁ, ଏହା ଆଚାର୍ଯ୍ୟ ଆଶ୍ମରଥ ସ୍ୱୀକାର କରନ୍ତି ।)

» **ଅନୁସ୍ମୃତେର୍ବାଦରିଃ ।।୩୦।।**

ନିରନ୍ତର ମନେ ପକାଇବା ପାଇଁ ପରମେଶ୍ୱରଙ୍କୁ ସୀମିତ ସ୍ଥାନରେ ସଂଯୁକ୍ତ କରାଯିବାରେ କିଛି ବିରୋଧ ନାହିଁ ବୋଲି ଆଚାର୍ଯ୍ୟ ବାଦରି କହନ୍ତି ।

ବିରାଟରୂପରେ ପରମେଶ୍ୱରଙ୍କୁ ନିରନ୍ତର ସ୍ମରଣ କରିବାପାଇଁ, ତାଙ୍କୁ ଦେଶ-ବିଶେଷରେ ସମ୍ବନ୍ଧ ବତାଇବାରେ କୌଣସି ପ୍ରକାର ବିରୋଧ ନାହିଁ । ଏହା ବାଦରି ଆଚାର୍ଯ୍ୟ ସ୍ୱୀକାର କରନ୍ତି ।

» **ସମ୍ପତ୍ତେରିତି ଜୈମିନିସ୍ତଥା ହି ଦର୍ଶୟତି ।। ୩୧ ।।**

ଐଶ୍ୱର୍ଯ୍ୟସମ୍ପନ୍ନ ହୋଇଥିବାରୁ ଆଚାର୍ଯ୍ୟ ଜୈମିନି ସେହିଭଳି ଭାବ ଅନ୍ୟ ଶ୍ରୁତିରେ ପ୍ରଦର୍ଶନ କରାଯାଇଛି ବୋଲି କହନ୍ତି ।

» **ଆମନନ୍ତି ଚୈନମସ୍ମିନ୍ ।। ୩୨ ।।**

ଏହି ବୈଦିକ ସିଦ୍ଧାନ୍ତ ପରମେଶ୍ୱରଙ୍କୁ ନିଶ୍ଚିତ ଭାବରେ ପ୍ରତିପାଦନ କରୁଛି ।

**ଇତି ମହର୍ଷିବ୍ୟାସବିରଚିତେ ବ୍ରହ୍ମସୂତ୍ରେ ପ୍ରଥମାଧ୍ୟାୟସ୍ୟ ଦ୍ୱିତୀୟଃ ପାଦଃ ।।୨।।**

# ତୃତୀୟ ପାଦ

● ଦ୍ୟୁଭ୍ୟାଦ୍ୟଧିକରଣମ୍ । ସୂ.୧-୭

» ଦ୍ୟୁଭ୍ୱାଦ୍ୟାୟତନଂ ସ୍ୱଶବ୍ଦାତ୍ ।। ୧ ।।

ଆଦି ଆୟତନକୁ (ପ୍ରାରମ୍ଭିକ ସ୍ଥାନକୁ) ଯିଏ ବ୍ୟାପୀ ରହିଛନ୍ତି, ଆତ୍ମା ଶବ୍ଦ ଦ୍ୱାରା ସେ ପରମାତ୍ମା ବୋଲି ବୁଝାଯାଆନ୍ତି ।[୧]

» ମୁକ୍ତୋପସୃପ୍ୟବ୍ୟପଦେଶାତ୍ ।। ୨ ।।

ମୁକ୍ତପୁରୁଷଙ୍କ ଦ୍ୱାରା ପ୍ରାପ୍ତ ହେଉଥିବା ପରମେଶ୍ୱରଙ୍କ ବିଷୟ କୁହାଯାଉଥିବାରୁ-- ସେହି ସର୍ବାଧାର ପରମାତ୍ମାଙ୍କୁ ମୁକ୍ତପୁରୁଷଙ୍କ ପାଇଁ ପ୍ରାପ୍ତବ୍ୟ ଭାବରେ ବତାଯାଇଛି । ଏଣୁ ସେ ଜୀବାତ୍ମା ହୋଇ ନ ପାରନ୍ତି ।

» ନାନୁମାନମତଚ୍ଛବ୍ଦାତ୍ ।। ୩ ।।

ଅନୁମାନ କଳ୍ପିତ ବିଶ୍ୱ ପ୍ରଧାନ ଆଧାର ହୋଇପାରିବ ନାହିଁ । କାରଣ ସେଥିପାଇଁ କୌଣସି ଶବ୍ଦ ପ୍ରମାଣ ନାହିଁ ।

» ପ୍ରାଣଭୃଚ୍ଚ ।। ୪ ।।

ପ୍ରାଣଧାରୀ ଜୀବାତ୍ମା ମଧ୍ୟ ନୁହେଁ । ଅର୍ଥାତ୍ ଜୀବ ଦ୍ୟୁଲୋକ ଆଦିର ଆଧାର ହୋଇପାରିବ ନାହିଁ ।

» ଭେଦବ୍ୟପଦେଶାତ୍ ।। ୫ ।।

ପରମାତ୍ମା ଓ ଜୀବାତ୍ମା ମଧ୍ୟରେ ଭେଦ ବର୍ଣ୍ଣିତ ହୋଇଥିବାରୁ ଜୀବକୁ ସର୍ବାଧାର ଭାବରେ ଗ୍ରହଣ କରାଯାଇପାରିବ ନାହିଁ ।

---

୧ ଉପନିଷଦରେ ଯାହାଙ୍କୁ ସ୍ୱର୍ଗ ଏବଂ ପୃଥିବୀ ଆଦିର ଆଧାର ଭାବରେ ବର୍ଣ୍ଣନା କରାଯାଇଛି, ସେ ପରବ୍ରହ୍ମ ପରମାତ୍ମା ଅଟନ୍ତି । କାହିଁକି ନାଁ ସେଠାରେ ସେହି ପରମାତ୍ମାବୋଧକ 'ଆତ୍ମା' ଶବ୍ଦର ପ୍ରୟୋଗ ହୋଇଛି ।

» **ପ୍ରକରଣାତ୍ ।। ୬ ।।**

ପରମାତ୍ମାଙ୍କ ପ୍ରକରଣ ହୋଇଥିବାରୁ (ସିଦ୍ଧ ହେଉଛି କି ଜୀବାତ୍ମା ଏବଂ ଜଡପ୍ରକୃତି ଦ୍ୟୁଲୋକ ଆଦିର ଅଧାର ନୁହେଁ ।) ।

» **ସ୍ଥିତ୍ୟଦନାଭ୍ୟାଂ ଚ ।। ୭ ।।**

ଗୋଟିଏ ଉଦାସୀନ ସ୍ଥିତିରେ ରହୁଛି ଅନ୍ୟଟି ଫଳଭୋଗ ବା ଭୋଜନ କରୁଅଛି ।

- **ଭୂମାଧିକରଣମ୍ । ସୂ.୮-୯**

» **ଭୂମା ସମ୍ପ୍ରସାଦାଦଧ୍ୟୁପଦେଶାତ୍ ।।୮।।**

ଭୂମାଙ୍କୁ ସୁଷୁପ୍ତିର ଊର୍ଦ୍ଧ୍ୱରେ ବୋଲି ଉପଦେଶ ଦିଆଯାଇଛି । ଅର୍ଥାତ୍ ଭୂମା (ସବୁଠାରୁ ବଡ) ବ୍ରହ୍ମ ଅଟେ । କାହିଁକି ନାଁ ତାଙ୍କୁ ପ୍ରାଣ ଶବ୍ଦବାଚ୍ୟ ଜୀବାତ୍ମାଙ୍କଠାରୁ ମଧ ବୃହତ୍ ବା ଉପରେ ବୋଲି ବତାଯାଇଛି ।

» ଧର୍ମୋପପତ୍ତେଶ୍ଚ ।। ୯ ।।

ଭୂମାର ଯାହା ଗୁଣ ବା ଧର୍ମ ବ୍ରହ୍ମଙ୍କର ତାହାହିଁ ଧର୍ମ ଅଟେ ।

- **ଅକ୍ଷରାଧିକରଣମ୍ । ସୂ. ୧୦-୧୨**

» **ଅକ୍ଷରମମ୍ବରାନ୍ତଧୃତେଃ ।। ୧୦ ।।**

ଅକ୍ଷର ପରମାତ୍ମା ବୋଧକ ଶବ୍ଦ ଅଟେ । ଆକାଶ ପର୍ଯ୍ୟନ୍ତ ସମସ୍ତ ଜଗତକୁ ଧାରଣ କରିଛନ୍ତି ବୋଲି ଏପରି କୁହାଯାଇପାରେ ।

» **ସା ଚ ପ୍ରଶାସନାତ୍ ।। ୧୧ ।।**

ସେ ଶାସନ କରୁଥିବାରୁ (ଅର୍ଥାତ୍ ସମସ୍ତ ଭୂତକୁ ଧାରଣ କରୁଥିବାରୁ ତାଙ୍କୁ ଶାସନ କର୍ତ୍ତା ବୋଲି କୁହାଯାଏ ।)

» **ଅନ୍ୟଭାବବ୍ୟାବୃତ୍ତେଶ୍ଚ ।। ୧୨ ।।**

ବ୍ରହ୍ମ ଭିନ୍ନ ଅନ୍ୟର ଭାବକୁ ଦୂର କରିଦେଇଥିବାରୁ (ଏଠାରେ ଅକ୍ଷରରେ ଅନ୍ୟର ଲକ୍ଷଣମାନଙ୍କର ନିରାକରଣ କରାଯାଇଛି । )

- **ଈକ୍ଷତିକର୍ମବ୍ୟପଦେଶାଧିକରଣମ୍ । ସୂ.୧୩**

» ଈକ୍ଷତିକର୍ମବ୍ୟପଦେଶାତ୍ ସଃ ।। ୧୩ ।।

ଈକ୍ଷତି କର୍ମ ଉପଦେଶ ଦିଆଯାଇଥିବାରୁ ସେ ପରମେଶ୍ୱର ଅଟନ୍ତି । ଏଠାରେ 'ଈକ୍ଷତେ' କ୍ରିୟାକୁ କର୍ମ ବତ୍ତାଯାଇଥିବା କାରଣରୁ ସେ ପରବ୍ରହ୍ମ ପରମେଶ୍ୱର ଅଟନ୍ତି ।

● ଦହରାଧିକରଣମ୍ । ସୂ: ୧୪-୨୧

» ଦହର ଉତ୍ତରେଭ୍ୟଃ ।। ୧୪ ।।

ଦହର ଶବ୍ଦ ଦ୍ୱାରା ଯାହାଙ୍କୁ ଲକ୍ଷ୍ୟ କରାଯାଇଛି, ସେ ହେଉଛନ୍ତି ବ୍ରହ୍ମ, କାରଣ ପରବର୍ତ୍ତୀ କଥନମାନଙ୍କରେ ତାହା ପ୍ରମାଣସିଦ୍ଧ ହେଉଛି ।

» ଗତିଶବ୍ଦାଭ୍ୟାଂ ତଥା ଦୃଷ୍ଟଂ ଲିଙ୍ଗଂ ଚ ।। ୧୫ ।।

ବ୍ରହ୍ମରେ ଗତି ବର୍ଣ୍ଣନା ଅନ୍ୟ ଶ୍ରୁତିମାନଙ୍କରେ ସେହିଭଳି ମିଳୁଥିବାରୁ ଓ ସେଥିରେ ବ୍ରହ୍ମବୋଧକ ଚିହ୍ନ ଥିବାରୁ, ଦହର ହେଉଛି ବ୍ରହ୍ମ ।

» ଧୃତେଶ୍ଚ ମହିମ୍ନୋଽସ୍ୟାସ୍ମିନ୍ନୁପଲବ୍ଧେଃ ।। ୧୬ ।।

ସକଳ ଜଗତକୁ ଧାରଣ କରିଥିବା ମହିମା ଅନ୍ୟ ଶ୍ରୁତିରେ ମଧ ଦେଖିବାକୁ ମିଳେ । ତେଣୁ ଦହର ହେଉଛି ବ୍ରହ୍ମ ।

» ପ୍ରସିଦ୍ଧେଶ୍ଚ ।। ୧୭ ।।

ଆକାଶ ପରମେଶ୍ୱର ଅର୍ଥରେ ପ୍ରସିଦ୍ଧି ଲାଭ କରିଥିବାରୁ ଦହରାକାଶ ମଧ ସେହି ଅର୍ଥରେ ପ୍ରସିଦ୍ଧ ।

» ଇତରପରାମର୍ଶାତ୍ ସ ଇତି ଚେନ୍ନାସମ୍ଭବାତ୍ ।। ୧୮ ।।

ଯଦି କହିବ କି, ଅନ୍ୟ ସବୁ ସଙ୍କେତ ରହିଥିବାରୁ ଦହର ହେଉଛି ଜୀବାତ୍ମା, ତେବେ ତାହା ଠିକ୍ ନୁହେଁ କି ସମ୍ଭବ ମଧ ନୁହେଁ ।

» ଉତ୍ତରାଚ୍ଛେଦାବିର୍ଭୂତସ୍ୱରୂପସ୍ତୁ ।। ୧୯ ।।

ଯଦି କହିବ ଦହର ଅର୍ଥ ଜୀବାତ୍ମା, ତେବେ ତାହା ଜୀବାତ୍ମାର ଶୁଦ୍ଧ ସ୍ୱରୂପକୁ ବୁଝାଇବ ।

» ଅନ୍ୟାର୍ଥଶ୍ଚ ପରାମର୍ଶଃ ।। ୨୦ ।।

ଆଉ ଏକ ଭିନ୍ନ ପ୍ରୟୋଜନରେ ଜୀବାତ୍ମାଙ୍କୁ ଲକ୍ଷ୍ୟ କରୁଥିବା ଶବ୍ଦର ସଙ୍କେତ ମଧ୍ୟ ରହିଛି ।

» ଅଲ୍ପଶ୍ରୁତେରିତି ଚେତ୍ତଦୁକ୍ତମ୍ ।। ୨୧ ।।

ଯଦି କହିବ ଶ୍ରୁତିରେ ଦହରଙ୍କୁ ଅଳ୍ପ ଅର୍ଥରେ ନିର୍ଦ୍ଦେଶ କରାଯାଇଛି, ତାହା ଜୀବାତ୍ମା ଭାବରେ ଗ୍ରହଣୀୟ ହୋଇପାରେ ।

• ଅନୁକୃତ୍ୟଧିକରଣମ୍ । ସୂ. ୨୨-୨୩

» ଅନୁକୃତେସ୍ତସ୍ୟ ଚ ।। ୨୨ ।।

ସେହି ଜୀବାତ୍ମାର ଅନୁକରଣ କରୁଥିବା ହେତୁ ପରମାତ୍ମାଙ୍କୁ ଅଳ୍ପ ପରିମାଣ ଯୁକ୍ତ କହିବା ଠିକ୍ ହେବ ।

» ଅପି ଚ ସ୍ମର୍ଯ୍ୟତେ ।। ୨୩ ।।

ଏହା ବ୍ୟତୀତ ସ୍ମୃତିରେ ମଧ କୁହାଯାଇଛି --

• ପ୍ରମିତାଧିକରଣମ୍ । ସୂ ୨୪-୨୫

» ଶବ୍ଦାଦେବ ପ୍ରମିତଃ ।। ୨୪ ।।

ପରିମିତ ପୁରୁଷ ଶ୍ରୁତିରେ ବର୍ଣ୍ଣିତ ଅର୍ଥାତ୍ ଅଙ୍ଗୁଷ୍ଠମାତ୍ର ଭାବରେ ପରମାତ୍ମାଙ୍କୁ ଦର୍ଶାଯାଇଛି ।

» ହୃଦ୍ୟପେକ୍ଷୟା ତୁ ମନୁଷ୍ୟାଧିକାରତ୍ୱାତ୍ ।। ୨୫ ।।

ସେହି ପରମପୁରୁଷ ହୃଦୟରେଥିବା କାରଣରୁ ଅଙ୍ଗୁଷ୍ଠମାତ୍ର ପରିମାଣ ବିଶିଷ୍ଟ କୁହାଯାଇପାରନ୍ତି । କାରଣ ବ୍ରହ୍ମବିଦ୍ୟାରେ ମନୁଷ୍ୟର ହିଁ ଅଧିକାର ରହିଛି ।

• ଦେବତାଧିକରଣମ୍ । ସୂ. ୨୬-୩୩

» ତଦୁପର୍ଯ୍ୟପି ବାଦରାୟଣଃ ସମ୍ଭବାତ୍ ।। ୨୬ ।।

ମନୁଷ୍ୟମାନଙ୍କ ଉର୍ଦ୍ଧ୍ୱରେ ଯେଉଁ ଦେବତାମାନେ ରହିଛନ୍ତି, ସେମାନଙ୍କ ପକ୍ଷରେ ବ୍ରହ୍ମଜ୍ଞାନ ଲାଭ ସମ୍ଭବ, ଏହା ଆଚାର୍ଯ୍ୟ ବାଦରାୟଣ କହନ୍ତି ।

» ବିରୋଧଃ କର୍ମଣୀତି ଚେନ୍ନାନେକପ୍ରତିପତ୍ତେର୍ଦର୍ଶନାତ୍ ।। ୨୭ ।।

ଯଦି କହିବ ଯଜ୍ଞାଦି କର୍ମରେ ବିରୋଧ ଘଟୁଛି, ତେବେ ତାହା ଠିକ୍ ନୁହେଁ । ଦେବତାମାନେ ଅନେକରୂପ ଧାରଣ କରିବା ସମ୍ଭବ ହୋଇଥିବାରୁ ଶାସ୍ତ୍ରରେ ଏଭଳି ଦେଖାଯାଇଛି ।

» **ଶବ୍ଦ ଇତି ଚେନ୍ନାତଃ ପ୍ରଭବାତ୍ ପ୍ରତ୍ୟକ୍ଷାନୁମାନାଭ୍ୟାମ୍ ।। ୨୮ ।।**

ଯଦି କହିବ ବୈଦିକ ଶବ୍ଦରେ ବିରୋଧ ହେଉଛି, ତେବେ ତାହା ଠିକ୍ ନୁହେଁ । କାରଣ ବେଦୋକ୍ତ ଶବ୍ଦରୁ ଦେବତା ଏବଂ ଜଗତର ଉତ୍ପତ୍ତି ହୋଇଛି- ଏହା ଶ୍ରୁତି ଓ ସ୍ମୃତି ଉଭୟ ପ୍ରମାଣ କରିଛନ୍ତି ।

» **ଅତଏବ ଚ ନିତ୍ୟତ୍ୱମ୍ ।। ୨୯ ।।**

ସୁତରାଂ ସେଥିରେ ବେଦର ନିତ୍ୟତା ମଧ୍ୟ ସିଦ୍ଧ ହେଉଛି ।

» **ସମାନନାମରୂପତ୍ୱାଚ୍ଚା-ବୃତ୍ତାବପ୍ୟବିରୋଧୋ ଦର୍ଶନାତ୍ ସ୍ମୃତେଶ୍ଚ ।।୩୦।।**

ପୂର୍ବ ପରି ସମାନ ନାମ-ରୂପ ହୋଇଥିବାରୁ ଯୁଗଚକ୍ରର ଆବର୍ତ୍ତନରେ ମଧ୍ୟ କୌଣସି ବିରୋଧତା ନଥିବା କଥା ଶ୍ରୁତି ଓ ସ୍ମୃତି ଉଭୟରେ ଦେଖାଯାଏ ।

» **ମଧ୍ୱାଦିଷ୍ୱସମ୍ଭବାଦନଧିକାରଂ ଜୈମିନିଃ ।। ୩୧ ।।**

ମଧୁବିଦ୍ୟା ଆଦିରେ ଏହା ସମ୍ଭବ ନୁହେଁ । ସେଥିରେ ଦେବତାମାନଙ୍କର ଅଧିକାର ମଧ୍ୟ ନାହିଁ-- ଏହା ଆଚାର୍ଯ୍ୟ ଜୈମିନି ମଧ୍ୟ କହନ୍ତି ।

» **ଜ୍ୟୋତିଷି ଭାବାଚ୍ଚ ।। ୩୨ ।।**

ଜ୍ୟୋତିର୍ମୟ ଲୋକରେ ଦେବତାମାନଙ୍କର ସ୍ଥିତି ହୋଇଥିବାରୁ (ତାଙ୍କର ଯଜ୍ଞାଦିକର୍ମ ଓ ବ୍ରହ୍ମବିଦ୍ୟାରେ ଅଧିକାର ମଧ୍ୟ ନାହିଁ) ।

» **ଭାବଂ ତୁ ବାଦରାଣୋଽସ୍ତି ହି ।। ୩୩ ।।**

ହେଲେ ଆଚାର୍ଯ୍ୟ ବାଦରାୟଣ ଦେବତାମାନଙ୍କର ଅଧିକାର ଥିବାକଥା ସ୍ୱୀକାର କରନ୍ତି, କାହିଁକି ନାଁ ଏହା ଶ୍ରୁତିରେ ବର୍ଣ୍ଣିତ ହୋଇଛି ।

● **ଅପଶୂଦ୍ରାଧିକରଣମ୍ । ସୂ.୩୪-୩୮**

» **ଶୁଗସ୍ୟ ତଦନାଦରଶ୍ରବଣାତ୍ତଦାଦ୍ରବଣାତ୍ ସୂଚ୍ୟତେ ହି ।। ୩୪ ।।**

ସେହି ହଂସ ଠାରୁ ନିଜର ଅନାଦର ଶୁଣି ରାଜା ଜାନଶ୍ରୁତିଙ୍କର ଶୋକ ହୋଇଥିଲା । ତାପରେ ସେ ଋଷିଙ୍କ ପାଖକୁ ଦଉଡିଲେ ।

» **କ୍ଷତ୍ରିୟତ୍ୱାବଗତେଶ୍ଚୋତ୍ତରତ୍ର ଚୈତ୍ରରଥେନ ଲିଙ୍ଗାତ୍ ।। ୩୫**

କ୍ଷତ୍ରିୟ ବୋଲି ଜଣାଯାଉଥିବାରୁ ପରବର୍ତ୍ତୀ ପ୍ରସଙ୍ଗରେ ଚୈତ୍ରରଥଙ୍କ ସମ୍ବନ୍ଧରେ ଚିତ୍ର, ଯାହାକି କ୍ଷତ୍ରିୟତ୍ୱ ସୂଚକ ଚିହ୍ନ ବା ପ୍ରମାଣପତ୍ର ହୋଇଥାଏ, ତାହା ଦ୍ୱାରା ଏହା ପ୍ରମାଣିତ ହୋଇଛି ।

» **ସଂସ୍କାରପରାମର୍ଶାତ୍ତଦଭାବାଭିଲାପାଚ୍ଚ ।। ୩୬ ।।**

ବେଦବିଦ୍ୟା ଗ୍ରହଣ କରିବା ପୂର୍ବରୁ ଉପନୟନ ଆଦି ସଂସ୍କାର କରାଇବା ଆବଶ୍ୟକ । ଶୂଦ୍ରଙ୍କ କ୍ଷେତ୍ରରେ ଏହା ହେଉନଥିବାରୁ ଏଭଳି କୁହାଯାଇଛି ।

» **ତଦଭାବନିର୍ଧାରଣେ ଚ ପ୍ରବୃତ୍ତେଃ ।। ୩୭ ।।**

ଶୂଦ୍ରଭାବର ନିର୍ଦ୍ଧାରଣ ପାଇଁ ଆଚାର୍ଯ୍ୟଙ୍କର ପ୍ରବୃତ୍ତି ମିଳିଛି ଅର୍ଥାତ୍ ଶିଷ୍ୟଙ୍କ ଠାରେ ଶୂଦ୍ରତ୍ୱର ଅଭାବକୁ ନିଶ୍ଚିତ କରିବା ପାଇଁ ଆଚାର୍ଯ୍ୟଙ୍କର ପ୍ରବୃତ୍ତି ହେବା ଆବଶ୍ୟକ । ଏହା ଦ୍ୱାରା ମଧ୍ୟ ସିଦ୍ଧ ହେଉଛି କି, ଶୂଦ୍ରର ବେଦାଧ୍ୟୟନରେ ଅଧିକାର ନାହିଁ ।

» **ଶ୍ରବଣାଧ୍ୟୟନାର୍ଥପ୍ରତିଷେଧାତ୍ ସ୍ମୃତେଶ୍ଚ ।। ୩୮ ।।**

ବେଦର ଶ୍ରବଣ, ଅଧ୍ୟୟନ ଏବଂ ଅର୍ଥଜ୍ଞାନ ଶୂଦ୍ର ଲାଗି ନିଷେଧ ।

- **କମ୍ପନାଧିକରଣମ୍ । ସୂ.୩୯ ।**

» **କମ୍ପନାତ୍ ।। ୩୯ ।।**

କମ୍ପନ ହେଉଥିବା କାରଣରୁ ଅର୍ଥାତ୍ ଏଭଳି କରିବା ଦ୍ୱାରା ସର୍ବତ୍ର କମ୍ପନ ଜାଗ୍ରତ ହୁଏ ।

- **ଜ୍ୟୋତିରଧିକରଣମ୍ । ସୂ.୪୦**

» **ଜ୍ୟୋତିର୍ଦର୍ଶନାତ୍ ।। ୪୦ ।।**

ଜ୍ୟୋତି ବୋଲି ଶ୍ରୁତିରେ ଯାହା ଦେଖାଯାଉଛି, ତାହା ବ୍ରହ୍ମଙ୍କୁ ଲକ୍ଷ୍ୟ କରାଯାଇ ।

- **ଅର୍ଥାନ୍ତରତ୍ୱାଦିବ୍ୟପଦେଶାଧିକରଣମ୍ । ସୂ.୪୧**

» **ଆକାଶୋଽର୍ଥାନ୍ତରତ୍ୱାଦିବ୍ୟପଦେଶାତ୍ ।। ୪୧ ।।**

ଆକାଶ ଶବ୍ଦ ପରବ୍ରହ୍ମ ବାଚକ ବୋଲି ନିର୍ଦ୍ଧାରିତ ହୋଇଛି । ନାମରୂପାତ୍ମକ ସମସ୍ତ ଜଗତଠାରୁ ଭିନ୍ନ ବୋଲି ଏଭଳି କୁହାଯାଇଛି ।

- **ସୁଷୁପ୍ତ୍ୟୁତ୍କ୍ରାନ୍ତ୍ୟଧିକରଣମ୍ । ସୂ.୪୨ - ୪୩**

» **ସୁଷୁପ୍ତ୍ୟୁତ୍କ୍ରାନ୍ତ୍ୟୋର୍ଭେଦେନ ।। ୪୨ ।।**

ସୁଷୁପ୍ତି ଓ ଦେହତ୍ୟାଗକୁ ଭେଦପୂର୍ବକ ବର୍ଣ୍ଣନା କରାଯାଇଛି । ଏଣୁ ଆକାଶ ଶବ୍ଦ ଏଠାରେ ପରମାତ୍ମା ବୋଧକ ଅଟେ ।

» **ପତ୍ୟାଦିଶବ୍ଦେଭ୍ୟଃ ।। ୪୩ ।।**

ଶ୍ରୁତିରେ ପତି, ପରମପତି ଆଦି ବିଶେଷ ଶବ୍ଦ ପ୍ରୟୋଗ ହୋଇଥିବାରୁ ଏହା ସିଦ୍ଧ ହେଉଛି କି, ଜୀବାତ୍ମା ପରମାତ୍ମାଙ୍କ ଠାରୁ ଭିନ୍ନ ।

ଇତି ମହର୍ଷିବ୍ୟାସବିରଚିତେ ବ୍ରହ୍ମସୂତ୍ରେ
ପ୍ରଥମାଧାୟସ୍ୟ ତୃତୀୟଃ ପାଦଃ ।। ୩ ।।

# ଚତୁର୍ଥ ପାଦ

• ଅନୁମାନିକାଧିକରଣମ୍ । ସୂ.୧-୭

» ଅନୁମାନିକମପ୍ୟେକେଷାମିତି ଚେନ୍ନ ଶରୀରରୂପକ ବିନ୍ୟସ୍ତଗୃହୀତେର୍ଦର୍ଶୟତି ଚ ।। ୧।।

ଯଦି କୁହକି, ଅନୁମାନଲବ୍ଧ ଜଡପ୍ରକୃତି ମଧ ଏକ ଶାଖା ବିଶେଷ ଦ୍ୱାରା ବେଦ ପ୍ରତିପାଦିତ ହୋଇଛି, ତେବେ ତାହା ଠିକ୍ ନୁହେଁ । କାହିଁକି ନାଁ ଏଠାରେ ଶରୀର ରଥ ରୂପରେ ପଡି ଅବ୍ୟକ୍ତ ଶବ୍ଦ ଦ୍ୱାରା ଗୃହୀତ ହୋଇଛି, ଯାହାକୁ ଶ୍ରୁତି ବର୍ଣ୍ଣନା କରିଛନ୍ତି ।

» ସୂକ୍ଷ୍ମଂ ତୁ ତଦର୍ହତ୍ୱାତ୍ ।। ୨ ।।

କିନ୍ତୁ ସୂକ୍ଷ୍ମଶରୀରକୁ ପରମଧାମ ଯାତ୍ରା ଲାଗି ଯେଉଁ ମାଧମ ଦରକାର, ତାହାକୁ ରଥ ବୁଝିବା ଉଚିତ ।

» ତଦଧୀନତ୍ୱାଦର୍ଥବତ୍ ।। ୩ ।।

ସେହି ପରମାତ୍ମାଙ୍କ ଅଧୀନ ହୋଇଥିବା କାରଣରୁ ତାହା ଶକ୍ତିରୂପା ପ୍ରକୃତି ଭାବରେ ସାର୍ଥକ ହେଲା ।

» ଜ୍ଞେୟତ୍ୱାବଚନାଚ୍ଚ ।। ୪ ।।

ବେଦରେ ପ୍ରକୃତିକୁ ଜ୍ଞେୟ ବର୍ଣ୍ଣନା କରାଯାଇନାହିଁ, ତେଣୁ ମଧ ଏହା ସାଂଖ୍ୟୋକ୍ତ ପ୍ରଧାନ ନୁହେଁ ।

» ବଦତୀତି ଚେନ୍ନ ପ୍ରାଜ୍ଞୋ ହି ପ୍ରକରଣାତ୍ ।।୫ ।।

ଯଦି କୁହ, ସାଂଖ୍ୟ ପ୍ରକୃତିକୁ ଜ୍ଞେୟ କୁହାଯାଉଛି, ତେବେ ତାହା ଠିକ୍ ନୁହେଁ । କାହିଁକି ନା ଉକ୍ତ ପ୍ରକରଣରୁ ଜଣାଯାଉଛି ଯେ, ପ୍ରାଜ୍ଞ ହେଉଛି ପରମାତ୍ମା ବା ଜ୍ଞେୟତତ୍ତ୍ୱ ହେଉଛି ପରମାତ୍ମା ।

» ତ୍ରୟାଣାମେବ ଚୈବମୁପନ୍ୟାସଃ ପ୍ରଶ୍ନଶ୍ଚ ।।୬ ।।

ଏହି ଉପନିଷଦରେ ତିନ ମଧ ଏହିଭଳି ଜ୍ଞେୟରୂପେ ଉଲ୍ଲେଖ ହୋଇଛି । ଆଉ ସେହି ତିନ ସମ୍ବନ୍ଧରେ ପ୍ରଶ୍ନ ମଧ କରାଯାଇଛି ।

» **ମହଦ୍ବଚ ।। ୭ ।।**

'ମହତ୍' ଶବ୍ଦ ଭଳି ଏହାକୁ ଦ୍ୱିତୀୟ ଅର୍ଥରେ ବୁଝିବା ଅଯୁକ୍ତିକର ନୁହେଁ ।

• **ଚମସାଧିକରଣମ୍ । ସୂ.୮ - ୧୦**

» **ଚମସବଦବିଶେଷାତ୍ ।। ୮ ।।**

ଚମସ ଶବ୍ଦ ଭଳି କୌଣସି ବିଶେଷ ଗୁଣର ଉଲ୍ଲେଖ ନ ଥିବାରୁ ଏହାକୁ ଦ୍ୱିତୀୟ ଅର୍ଥରେ ମଧ ପ୍ରୟୋଗ କରାଯାଇପାରେ ।

» **ଜ୍ୟୋତିରୂପକ୍ରମା ତୁ ତଥା ହ୍ୟଧୀୟତ ଏକେ ।।୯ ।।**

ଏହା ନିଶ୍ଚିତ ଅଟେକି, ଜ୍ୟୋତି ଆଦି ତ୍ରିବିଧ ତତ୍ତ୍ୱର କାରଣଭୂତ ପରମେଶ୍ୱରଙ୍କ ଶକ୍ତିକୁ ସେହିପରି କେତେକଙ୍କ ଦ୍ୱାରା ପଢାଯାଇଥାଏ ବା ବର୍ଣ୍ଣନ କରାଯାଇଥାଏ ।

» **କଳ୍ପନୋପଦେଶାଚ୍ଚ ମଧ୍ୱାଦିବଦବିରୋଧଃ ।। ୧୦ ।।**

ରୂପକ କଳ୍ପନା ଦ୍ୱାରା ମଧ ଏଭଳି ଉପଦେଶ ଦିଆଯାଇଛି । ମଧୁଆଦି ଭଳି ଏଥିରେ କୌଣସି ବିରୋଧ ନାହିଁ ।

• **ସଂଖ୍ୟୋପସଂଗ୍ରହାଧିକରଣମ୍ । ସୂ.୧୧-୧୩**

» **ନ ସଂଖ୍ୟୋପସଂଗ୍ରହାଦପି ନାନାଭାବାଦତିରେକାଚ୍ଚ ।। ୧୧ ।।**

ସଂଖ୍ୟା ଗ୍ରହଣ ହୋଇଥିଲେ ହେଁ ଏହା ଗଣନା ହୋଇନାହିଁ । କାରଣ ଏହି ସଂଖ୍ୟା ଭିନ୍ନ ଭିନ୍ନ ଭାବରେ ଅନେକ ଭାବ ପ୍ରକାଶ କରୁଥିବାରୁ ଏବଂ ଅଧିକ ସଂଖ୍ୟାରେ ବର୍ଣ୍ଣିତ ହୋଇଥିବାରୁ ଏଭଳି ହୁଏ ।

» **ପ୍ରାଣାଦୟୋ ବାକ୍ୟଶେଷାତ୍ ।। ୧୨ ।।**

ପ୍ରାଣ ଏବଂ ଇନ୍ଦ୍ରିୟାଦିଙ୍କର କଥା ପରବର୍ତ୍ତୀ ମନ୍ତ୍ରରେ କୁହାଯାଇଥିବା ବାକ୍ୟରୁ ସ୍ପଷ୍ଟ ହେଉଛି ।

» **ଜ୍ୟୋତିଷୈକେଷାମସତ୍ୟନ୍ନେ ।। ୧୩ ।।**

ଗୋଟିଏ ଶାଖାର ପାଠ ଦ୍ୱାରା ଅନ୍ୟର ଉଲ୍ଲେଖ ନ ହେଲେ ହେଁ ଜ୍ୟୋତି ଶବ୍ଦ ଦ୍ୱାରା ତାହା ପୂରଣ ହୋଇଯାଉଛି । ଅର୍ଥାତ୍ ସେହି ସଂଖ୍ୟା ବୋଧ ହେଉଛି ।

• **କାରଣତ୍ୱାଧିକରଣମ୍ । ସୂ.୧୪-୧୫**

» **କାରଣତ୍ୱେନ ଚାକାଶାଦିଷୁ ଯଥାବ୍ୟପଦିଷ୍ଟୋକ୍ତେଃ ।।୧୪।।**

ଆକାଶ ଆଦି କୌଣସି ବସ୍ତୁ କ୍ରମାନ୍ୱୟରେ ରଚନା କରାଯାଇଥିବା ପଦାର୍ଥମାନଙ୍କ ମଧରେ କାରଣ ରୂପରେ ତ ସର୍ବତ୍ର ସେହି ଏକ ବେଦାନ୍ତ ବର୍ଣ୍ଣିତ ବ୍ରହ୍ମର ପ୍ରତିପାଦନ କରାଯାଇଛି । ଏଣୁ ପରବ୍ରହ୍ମ ଜଗତର କାରଣ ଅଟନ୍ତି ।

» **ସମାକର୍ଷାତ୍ ।। ୧୫ ।।**

ପୂର୍ବାପର ବାକ୍ୟରୁ ପୂର୍ଣ୍ଣରୂପରେ ଆକର୍ଷଣ କରି ସମ୍ବନ୍ଧ ପ୍ରତିଷ୍ଠା କରିବା ଦ୍ୱାରା ଏଭଳି ବୁଝାଯାଉଛି ଅର୍ଥାତ ଅସତ୍ ଆଦି ଶବ୍ଦ ମଧ ବ୍ରହ୍ମବାଚକ ସିଦ୍ଧ ହେଉଛି ।

• **ବାଲାକ୍ୟଧିକରଣମ୍ । ସୂ.୧୬ -୧୮**

» **ଜଗଦ୍ୱାଚିତ୍ୱାତ୍ ।। ୧୬ ।।**

ଜଗତ୍‌ବାଚକ ହୋଇଥିବାରୁ ଅର୍ଥାତ ସୃଷ୍ଟି ଅବା ରଚନାରୂପ କର୍ମ ଜଡଚେତନାତ୍ମକ ସମ୍ପୂର୍ଣ୍ଣ ଜଗତ୍‌ବାଚକ ଅଟେ । ଏଣୁ ଚେତନ ପରମେଶ୍ୱର ହିଁ ଏହାର କର୍ତ୍ତା ଅଟନ୍ତି, ଜଡପ୍ରକୃତି ନୁହେଁ ।

» **ଜୀବମୁଖ୍ୟପ୍ରାଣଲିଙ୍ଗାନ୍ନେତି ଚେତ୍ତଦ୍ ବ୍ୟାଖ୍ୟାତମ୍ ।।୧୭**

ଯଦି ଏଭଳି କୁହ କି, ଉକ୍ତ ପ୍ରସଙ୍ଗର 'ବାକ୍ୟ ଶେଷରେ ଜୀବ ତଥା ମୁଖ୍ୟ ପ୍ରାଣ ବୋଧକ ଲକ୍ଷଣ ମିଳୁଛି, ତେଣୁ ପ୍ରାଣ ସହିତ ଜୀବ ଜ୍ଞେୟତତ୍ତ୍ୱ ହେବା ଦରକାର । ତାହେଲେ ବ୍ରହ୍ମ ସେଠାରେ ଜ୍ଞେୟ ନୁହେଁ । ଏହା ପ୍ରଥମରୁ ନିରାକରଣ କରାଯାଇଛି ।

» **ଅନ୍ୟାର୍ଥଂ ତୁ ଜୈମିନିଃ ପ୍ରଶ୍ନବ୍ୟାଖ୍ୟାନାଭ୍ୟାମପି ଚୈବମେକେ ।।୧୮**

ଆଚାର୍ଯ୍ୟ ଜୈମିନିଙ୍କ ମତରେ ଜୀବାତ୍ମା ଓ ମୁଖ୍ୟ ପ୍ରାଣର ବର୍ଣ୍ଣନା ଅନ୍ୟ ପ୍ରୟୋଜନାନୁସାରେ କରାଯାଇଛି । ପ୍ରଶ୍ନୋତ୍ତରରୁ ଏହା ସିଦ୍ଧ ହେଉଛି ବୋଲି ନିର୍ଦ୍ଦିଷ୍ଟଶାଖା(କାଣ୍ୱଶାଖା)ର ଲୋକ କହନ୍ତି ।

- **ବାକ୍ୟାନ୍ୱୟାଧିକରଣମ୍ । ସୂ.୧୯-୨୨**

» **ବାକ୍ୟାନ୍ୱୟାତ୍ ।। ୧୯ ।।**

ପୂର୍ବାପର ବାକ୍ୟ ସମ୍ବନ୍ଧରୁ ବର୍ଣ୍ଣିତ ହେଉଛି କି, ଏହି ପ୍ରକରଣରେ ଆସୁଥିବା ଜୀବ ଏବଂ ମୁଖ୍ୟ ପ୍ରାଣର ଲକ୍ଷଣମାନଙ୍କର ପ୍ରୟୋଗ ଅନ୍ୟ ପ୍ରୟୋଜନରେ ହୋଇଛି ।

» **ପ୍ରତିଜ୍ଞାସିଦ୍ଧେର୍ଲିଙ୍ଗମାଶ୍ମରଥ୍ୟଃ ।। ୨୦ ।।**

ଆଚାର୍ଯ୍ୟ ଆଶ୍ମରଥ୍ୟ କହନ୍ତି- ବ୍ରହ୍ମ ଲକ୍ଷଣ କୁହାଯାଇଥିବା ହେତୁ ପ୍ରତିଜ୍ଞାର ସିଦ୍ଧି ହେଉଛି ।

» **ଉତ୍କ୍ରମିଷ୍ୟତ ଏବଂ ଭାବାଦିତ୍ୟୌଡୁଲୋମିଃ ।। ୨୧ ।।**

ଆଚାର୍ଯ୍ୟ ଔଡୁଲୋମି ସ୍ୱୀକାର କରନ୍ତି ଯେ, ଦେହତ୍ୟାଗ କଲାପରେ ବ୍ରହ୍ମଜ୍ଞାନୀ ବ୍ରହ୍ମରେ ଲୀନ ହୁଅନ୍ତି । ତେଣୁ ବ୍ରହ୍ମ ଜଗତର କାରଣ ଅଟେ ।

» **ଅବସ୍ଥିତେରିତି କାଶକୃତ୍ସ୍ନଃ ।। ୨୨ ।।**

ଆଚାର୍ଯ୍ୟ କାଶକୃତ୍ସ୍ନ କହନ୍ତି- ପ୍ରଳୟକାଳରେ ସମ୍ପୂର୍ଣ୍ଣ ଜଗତର ସ୍ଥିତି ପରମାତ୍ମାଙ୍କଠାରେ ଲୀନ ହୁଏ । ତେଣୁ ବ୍ରହ୍ମ ହେଉଛନ୍ତି ଜଗତର କାରଣ ।

- **ପ୍ରକୃତ୍ୟାଧିକରଣମ୍ । ସୂ୨୩ - ୨୭**

» **ପ୍ରକୃତିଶ୍ଚ ପ୍ରତିଜ୍ଞାଦୃଷ୍ଟାନ୍ତାନୁପରୋଧାତ୍ । ୨୩ ।।**

ବ୍ରହ୍ମ ହେଉଛନ୍ତି ଉପାଦାନ କାରଣ । ଏହାକୁ ସ୍ୱୀକାର କଲେ ଶ୍ରୁତିରେ ପ୍ରତିଜ୍ଞା ବାକ୍ୟ ଓ ଦୃଷ୍ଟାନ୍ତ ବାକ୍ୟ ବାଧିତ ହୁଏ ନାହିଁ ।

» **ଅଭିଧ୍ୟୋପଦେଶାଚ୍ଚ ।। ୨୪ ।।**

ସଙ୍କଳ୍ପ ପୂର୍ବକ ସୃଷ୍ଟି ରଚନା କରିବା କଥା ଶ୍ରୁତିର ଉପଦେଶରୁ ମଧ୍ୟ ସ୍ପଷ୍ଟ ହୁଏ ।

» **ସାକ୍ଷାଚ୍ଚୋଭୟାମ୍ନାନାତ୍ ।। ୨୫ ।।**

ପ୍ରତ୍ୟକ୍ଷ ଭାବରେ ବ୍ରହ୍ମଙ୍କର ଉଭୟଭାବ ଅର୍ଥାତ୍ କର୍ତ୍ତା ଓ ପ୍ରକୃତିଭାବ ଶ୍ରୁତିରେ ବାରମ୍ବାର କଥିତ ହୋଇଛି ।

» ଆତ୍ମକୃତେଃ ପରିଣାମାତ୍ ।। ୨୬ ।।

ସ୍ୱୟଂ ଜଗଦ୍ ରୂପରେ ପ୍ରକଟିତ ହୋଇଛନ୍ତି, ଏହା ପରିଣାମ ସ୍ୱୀକାର କାରଣରୁ ହୋଇଛି ।

» ଯୋନିଶ୍ଚ ହି ଗୀୟତେ ।। ୨୭ ।।

କାହିଁକି ନାଁ ବେଦାନ୍ତରେ ବ୍ରହ୍ମଙ୍କୁ ଯୋନି ମଧ କୁହାଯାଇଛି । ତେଣୁ ବ୍ରହ୍ମ ଉପାଦାନ କାରଣ ଅଟେ । ଅର୍ଥାତ୍ ପ୍ରଭବସ୍ଥଳୀ ହୋଇଥିବାରୁ ଏଭଳି ଅଟେ ।

• ସର୍ବବ୍ୟାଖ୍ୟାନାଧିକରଣମ୍ । ସୂ. ୨୮

» ଏତେନ ସର୍ବେ ବ୍ୟାଖ୍ୟାତା ବ୍ୟାଖ୍ୟାତାଃ ।। ୨୮ ।।

ଏହାଦ୍ୱାରା ସମସ୍ତ ପ୍ରଶ୍ନର ବ୍ୟାଖ୍ୟାନ କରାଗଲା । ଆଉ ସମସ୍ତ ପ୍ରଶ୍ନର ଉତ୍ତର ମଧ ଦିଆଗଲା ।

ଇତି ମହର୍ଷିବ୍ୟାସବିରଚିତେ ବ୍ରହ୍ମସୂତ୍ରେ ପ୍ରଥମାଧାୟସ୍ୟ ଚତୁର୍ଥଃ ପାଦଃ ।। ୪ ।।

ପ୍ରଥମଽଧାୟଃ ସମାପ୍ତଃ

# ଦ୍ୱିତୀୟ ଅଧ୍ୟାୟ

## ପ୍ରଥମ ପାଦ

*ପ୍ରଥମ ଅଧ୍ୟାୟରେ ଏହା ସିଦ୍ଧ ହେଲା କି ସମଗ୍ର ବେଦାନ୍ତ ବାକ୍ୟ ପରବ୍ରହ୍ମ ପରମେଶ୍ୱରଙ୍କୁ ହିଁ ଜଗତର ଅଭିନ୍ନ ନିମିତ୍ତ ଉପାଦାନ ଭାବରେ ସ୍ୱୀକାର କରିଛନ୍ତି । ତେଣୁ ସେହି ଅଧ୍ୟାୟଟିକୁ ସମନ୍ୱୟାଧ୍ୟାୟ ବୋଲି ଆଖ୍ୟାୟିତ କରାଯାଇପାରେ । ବ୍ରହ୍ମ ହିଁ ସମଗ୍ର ବିଶ୍ୱର କାରଣ ଅଟେ: ଏହି ବିଷୟରେ ଶ୍ରୁତିରେ କୌଣସି ଜାଗାରେ ମତଭେଦ ଦେଖାଯାଏ ନାହିଁ । ଅନେକ ଗୁଡ଼ିଏ କାରଣ ଦର୍ଶାଇ ଏହାକୁ ପ୍ରମାଣ କରାଯାଇଛି । ଯଥା- ପ୍ରଧାନ ଆଦି ଜଡ଼ବର୍ଗର କାରଣ ଦର୍ଶାଉଥିବା ସାଂଖ୍ୟ ଆଦି ମତକୁ ଶବ୍ଦ ପ୍ରମାଣଶୂନ୍ୟ ବତାଉଥିବା ଅନେକ ଦୃଷ୍ଟାନ୍ତ ଏଥିରେ ରହିଛି । ଏଥିରୁ ସିଦ୍ଧ ହେଉଛି ଯେ ଶ୍ରୁତିମାନଙ୍କର ସ୍ମୃତି ସହିତ କୌଣସି ସ୍ଥାନରେ ବିରୋଧ ନାହିଁ । ଅଧୁନା ଅବିରୋଧ ରୂପକ ଦ୍ୱିତୀୟ ଅଧ୍ୟାୟର ପ୍ରାରମ୍ଭ କରାଯାଇ ତାହାର ପ୍ରତିପାଦନ କରାଯାଉଛି । ଏଥିରେ ପ୍ରାରମ୍ଭରୁ ସାଂଖ୍ୟବାଦୀଙ୍କ ପକ୍ଷରୁ ଶଙ୍କା ଉପସ୍ଥିତ କରାଇ ସମାଧାନ ପାଇଁ ପ୍ରଚେଷ୍ଟା କରାଯାଇଛି ।*

- **ସ୍ମୃତ୍ୟଧିକରଣମ୍ । ସୂ. ୧-୨**

» **ସ୍ମୃତ୍ୟନବକାଶଦୋଷପ୍ରସଙ୍ଗ ଇତି ଚେନ୍ନାନ୍ୟସ୍ମୃତ୍ୟ ନବକାଶଦୋଷପ୍ରସଙ୍ଗାତ୍ ।। ୧ ।।**

ଯଦି କୁହକି, ପ୍ରଧାନକୁ ଜଗତର କାରଣ ନ ମାନିବା ଦ୍ୱାରା ସାଂଖ୍ୟସ୍ମୃତିର ଅବକାଶ (ମାନ୍ୟତା) ନ ଦେବାର ଦୋଷ ଉପସ୍ଥିତ ହେବ: ତେବେ ଏପରି କହିବା ଠିକ୍ ହେବନାହିଁ କାରଣ ତାହାକୁ ମାନ୍ୟତା ଦେବାଦ୍ୱାରା ଅନ୍ୟ ସ୍ମୃତିମାନଙ୍କୁ ମାନ୍ୟତା ନ ଦେବା ଦୋଷ ଅବଶ୍ୟ ଲାଗିବ ।

» ଇତରେଷାଂ ଚାନୁପଲବ୍ଧେଃ ।। ୨ ।।

ଅନ୍ୟ ସ୍ମୃତିକାରଙ୍କ ମତରେ ପ୍ରଧାନ କାରଣବାଦର ଉପଲବ୍ଧି ହୁଏନାହିଁ ଏଣୁ ପ୍ରଧାନକୁ ଜଗତର କାରଣ ନ ମାନିବା ଉଚିତ ହେବ ।

• ଯୋଗପ୍ରତ୍ୟୁକ୍ତ୍ୟଧିକରଣମ୍ । ସୂ.୩

» ଏତେନ ଯୋଗଃ ପ୍ରତ୍ୟୁକ୍ତଃ ।। ୩ ।।

ଏହି ପୂର୍ବୋକ୍ତ ବିବେଚନ ଦ୍ୱାରା ଯୋଗଶାସ୍ତ୍ରର ମଧ ପ୍ରତ୍ୟୁତ୍ତର ହେଲା ।

• ବିଲକ୍ଷଣତ୍ୱାଧିକରଣମ୍ । ସୂ.୪ -୧୧

» ନ ବିଲକ୍ଷଣତ୍ୱାଦସ୍ୟ ତଥାତ୍ୱଂ ଚ ଶବ୍ଦାତ୍ ।।୪

ଚେତନ ବ୍ରହ୍ମ ଜଗତର କାରଣ ନୁହେଁ, କାହିଁକି ନାଁ ଏହି କାର୍ଯ୍ୟରୂପ ଜଗତ ଉକ୍ତ (କାରଣ)ଠାରୁ ବିଲକ୍ଷଣ (ଜଡ଼) ଅଟେ ଏବଂ ତାହାର ଜଡ଼ତ୍ୱ ପ୍ରାପ୍ତି ହେବା ଶବ୍ଦ (ବେଦ) ପ୍ରମାଣରୁ ସିଦ୍ଧ ହେଉଛି ।

» ଅଭିମାନିବ୍ୟପଦେଶସ୍ତୁ ବିଶେଷାନୁଗତିଭ୍ୟାମ୍ ।। ୫ ।।

କିନ୍ତୁ ସେଠାରେ ତ ସେହି ସେହି ତତ୍ତ୍ୱାଭିମାନୀ ଦେବତାମାନଙ୍କର ବର୍ଣ୍ଣନା ହୋଇଛି, ଏହିକଥା ବିଶେଷ ଶବ୍ଦର ପ୍ରୟୋଗ ଦ୍ୱାରା ଏବଂ ଉକ୍ତ ତତ୍ତ୍ୱରେ ଦେବତାମାନଙ୍କର ପ୍ରବେଶ ହେବାଦ୍ୱାରା ସିଦ୍ଧ ହେଉଛି ।

» ଦୃଶ୍ୟତେ ତୁ ।। ୬ ।।

କିନ୍ତୁ ଶ୍ରୁତିରେ ଉପାଦାନ ସଂଯୁକ୍ତ ବିଲକ୍ଷଣ ବସ୍ତୁର ଉତ୍ପତ୍ତି ବର୍ଣ୍ଣନା ମଧ ଦେଖାଯାଏ (ଅତଃ ବ୍ରହ୍ମଙ୍କୁ ଜଗତର ଉପାଦାନ କାରଣ ମାନିବା ଅନୁଚିତ ନୁହେଁ ।) ।

» ଅସଦିତି ଚେନ୍ନ ପ୍ରତିଷେଧମାତ୍ରତ୍ୱାତ୍ ।। ୭ ।।

ଯଦି କହିବା (ଏଭଳି ମାନିବା ଦ୍ୱାରା) ଅସତ୍‌କାର୍ଯ୍ୟବାଦ ଅର୍ଥାତ୍ ଯାହାର ସତ୍ତା ନାହିଁ ସେଭଳି ବସ୍ତୁର ଉତ୍ପତ୍ତି ପ୍ରସଙ୍ଗ ଉପସ୍ଥିତ ହେଉଛି, ତେବେ ଏଭଳି କିଛି କଥା ନାହିଁ କାହିଁକି ନାଁ ସେଠାରେ ଅସତ୍ ଶବ୍ଦର ପ୍ରତିଷେଧର ଅର୍ଥାତ୍ ସର୍ବାଦୌ ଅଭାବବୋଧ ହେଉଛି ।

» ଅପୀତୌ ତଦ୍ୱତ୍‌ପ୍ରସଙ୍ଗାଦସମଞ୍ଜସମ୍ ।। ୮ ।।

ଏଭଳି ମାନିବା ଦ୍ୱାରା ପ୍ରଳୟ କାଳରେ ବ୍ରହ୍ମକୁ ସେହି ସଂସାରର ଜଡ଼ତ୍ୱ ଓ ସୁଖଦୁଃଖାଦି ଧର୍ମଯୁକ୍ତ ମାନିବାର ପ୍ରସଙ୍ଗ ଉପସ୍ଥିତ ହେବ । ଏଣୁ ଉପରୋକ୍ତ ମାନ୍ୟତା ଯୁକ୍ତିସଙ୍ଗତ ନୁହେଁ ।

» ନ ତୁ ଦୃଷ୍ଟାନ୍ତଭାବାତ୍ ।। ୯ ।।

ଉପରୋକ୍ତ ବେଦସମ୍ମତ ସିଦ୍ଧାନ୍ତରେ ନିଃସନ୍ଦେହରେ ପୂର୍ବ ସୂତ୍ରରେ ବର୍ଣ୍ଣିତ ହୋଇଥିବା ଦୋଷ ନାହିଁ କାହିଁକି ନାଁ ଏଭଳି ଅନେକ ଦୃଷ୍ଟାନ୍ତ ଉପଲବ୍ଧ ହେଉଛି (ଯାହା ସାହାଯ୍ୟରେ କାରଣରେ କାର୍ଯ୍ୟର ବିଲୀନ ହେବା ଯୋଗୁଁ ସେଥିରେ କାର୍ଯ୍ୟର ଧର୍ମ ରହେ ନାହିଁ ଏହା ସ୍ପଷ୍ଟ ହୋଇଯାଉଛି) ।

» ସ୍ୱପକ୍ଷଦୋଷାଚ୍ଚ ।। ୧୦ ।।

ବାଦୀର ନିଜ ପକ୍ଷରେ ଉପରୋକ୍ତ ସମସ୍ତ ଦୋଷ ଆନତ ହେଉଛି ଏଣୁ ମଧ (ପ୍ରଧାନକୁ ଜଗତର କାରଣ ମାନିବା ଠିକ୍ ନୁହେଁ) ।

» ତର୍କାପ୍ରତିଷ୍ଠାନାଦପ୍ୟନ୍ୟଥାଽନୁମେୟମିତି-ଚେଦେବମପ୍ୟନିର୍ମୋକ୍ଷପ୍ରସଙ୍ଗଃ ।।୧୧।।

ଯଦି ଏଭଳି କୁହକି ତର୍କର ସ୍ଥିରତା ନ ହେବା ଯୋଗୁଁ ମଧ ଦ୍ୱିତୀୟ ପ୍ରକାରରେ ଅନୁମାନ ଦ୍ୱାରା କାରଣର ନିଶ୍ଚୟ କରିବା ଦରକାର, ତେବେ ଏଭଳି ସ୍ଥିତିରେ ମଧ ମୋକ୍ଷ ନ ହେବାର ପ୍ରସଙ୍ଗ ଆସୁଅଛି ।

• ଶିଷ୍ଟାପରିଗ୍ରହାଧିକରଣମ୍ । ସୂ. ୧୨

» ଏତେନ ଶିଷ୍ଟାପରିଗ୍ରହା ଅପି ବ୍ୟାଖ୍ୟାତାଃ ।।୧୨

ଏହି ପୂର୍ବ ନିରୂପିତ ସିଦ୍ଧାନ୍ତରେ ଶିଷ୍ଟପୁରୁଷମାନଙ୍କ ଦ୍ୱାରା ଅସ୍ୱୀକୃତ ଅନ୍ୟସମସ୍ତ ମତକୁ ମଧ ପ୍ରତିବାଦ କରି ଦିଆଗଲା ।

• ଭୋକ୍ତ୍ରାପତ୍ୟଧିକରଣମ୍ । ସୂ. ୧୩

» ଭୋକ୍ତ୍ରାପତ୍ତେରବିଭାଗଶ୍ଚେତ୍ସ୍ୟାଲ୍ଲୋକବତ୍ ।।୧୩ ।।

ଯଦି କହିବ (ବ୍ରହ୍ମକୁ ଜଗତର କାରଣ ମାନିବା ଦ୍ୱାରା ସେଥିରେ) ଭୋକ୍ତାପଣର ପ୍ରସଙ୍ଗ ଆସିଯିବ, ତେଣୁ ଜୀବ ଏବଂ ଈଶ୍ୱରଙ୍କର ବିଭାଗସିଦ୍ଧ ହୋଇପାରିବ ନାହିଁ, ସେହିଭଳି ଜୀବ ଏବଂ ଜଡ଼ବର୍ଗର ମଧ ପରସ୍ପର ବିଭାଗସିଦ୍ଧ

ହୋଇପାରିବନାହିଁ: ତେବେ ଏହା କହିବା ଠିକ୍ ନୁହେଁ କାହିଁକି ନାଁ ଲୋକମାନଙ୍କ ଠାରେ ଯେଉଁଭଳି ବିଭାଗ ଦେଖାଯାଉଛି ସେହିଭଳି ହୋଇପାରେ ।

- **ଆରମ୍ଭଣାଧିକରଣମ୍ । ସୂ.୧୪ - ୨୦**

» **ତଦନନ୍ୟତ୍ୱମାରମ୍ଭଣଶବ୍ଦାଦିଭ୍ୟଃ ।। ୧୪ ।।**

ଆରମ୍ଭଣ ଶବ୍ଦ ଆଦି କାରଣମାନଙ୍କ ଦ୍ୱାରା ତାହାର ଅର୍ଥାତ୍ କାର୍ଯ୍ୟର କାରଣଠାରେ ଅନନ୍ୟତା ସିଦ୍ଧ ହେଉଛି ।

» **ଭାବେ ଚୋପଲବ୍ଧେଃ ।। ୧୫ ।।**

(କାରଣମଧ୍ୟରେ ଶକ୍ତିରୂପେ) କାର୍ଯ୍ୟର ସତ୍ତା ପ୍ରତିପାଦନ ହେବାରୁ ତାହାର ଉପଲବ୍ଧ ହୋଇଥାଏ, ଏଣୁ (ଏହା ସିଦ୍ଧ ହେଉଛି କି ଏହି ଜଗତ୍ ନିଜର କାରଣ ବ୍ରହ୍ମରେ ଶକ୍ତି ରୂପରେ ସର୍ବଦା ସ୍ଥିତ ଅଟେ) ।

» **ସତ୍ତ୍ୱାଚ୍ଚାବରସ୍ୟ ।। ୧୬ ।।**

କାର୍ଯ୍ୟର ସତ୍ ହେବା ଶ୍ରୁତିରେ କୁହାଯାଇଛି ଏହା ଦ୍ୱାରା ମଧ୍ୟ (ପ୍ରକଟିତ ହେବା ପୂର୍ବରୁ ତାହାର ଉପସ୍ଥିତି ସିଦ୍ଧ ହେଉଛି) ।

» **ଅସଦ୍ୱ୍ୟପଦେଶାନ୍ନେତି ଚେନ୍ନ ଧର୍ମାନ୍ତରେଣ ବାକ୍ୟଶେଷାତ୍ ।। ୧୭ ।।**

ଯଦି କୁହ (ଦ୍ୱିତୀୟ ଶ୍ରୁତିରେ) ଉତ୍ପତ୍ତି ପ୍ରାରମ୍ଭରୁ ଏହି ଜଗତକୁ ଅସତ୍ ବତାଯାଇଛି, ତେବେ କାର୍ଯ୍ୟକୁ କାରଣ ମଧ୍ୟରେ ପ୍ରଥମରୁ ବିଦ୍ୟମାନ ହେବାର ସିଦ୍ଧ ହେଉନାହିଁ, ତେବେ ଏଭଳି କଥା ନୁହେଁ କାହିଁକି ନାଁ ସେଭଳି କହିବା ଧର୍ମାନ୍ତର ଅପେକ୍ଷାଠୁଁ ହୋଇଥାଏ । ଏହି କଥା ଅନ୍ତିମ ଶବ୍ଦରୁ ସିଦ୍ଧ ହେଉଛି ।

» **ଯୁକ୍ତେଃ ଶବ୍ଦାନ୍ତରାଚ୍ଚ ।। ୧୮ ।।**

ଯୁକ୍ତି ଦ୍ୱାରା ତଥା ଅନ୍ୟ ଶବ୍ଦ ସାହାଯ୍ୟରେ ମଧ୍ୟ (ଏହି କଥା ସିଦ୍ଧ ହେଉଛି) ।

» **ପଟବଚ୍ଚ ।। ୧୯ ।।**

ସୂତା ସାହାଯ୍ୟରେ ବସ୍ତ୍ରସଦୃଶ ମଧ୍ୟ (ବ୍ରହ୍ମରେ ଏହି ଜଗତ୍ ପ୍ରାରମ୍ଭରୁ ଉପସ୍ଥିତ) ।

» **ଯଥା ଚ ପ୍ରାଣାଦି ।। ୨୦ ।।**

ଯଥା, ଯେଉଁଭଳି ପ୍ରାଣ ଏବଂ ଇନ୍ଦ୍ରିୟଗଣ(ସ୍ଥୂଳ ଶରୀରରୁ ବହିର୍ଗତ ହେବା ଦେଖାଯାଏନାହିଁ ମାତ୍ର ତାହାର ସତ୍ତା ଅବଶ୍ୟ ରହେ, ସେହିଭଳି ପ୍ରଳୟ କାଳରେ ମଧ୍ୟ ଅବ୍ୟକ୍ତରୂପରେ ଜଗତର ସ୍ଥିତି ଅବଶ୍ୟ ହୁଏ) ।

- **ଇତରବ୍ୟପଦେଶାଧିକରଣମ୍ । ସୂ.୨୧-୨୩**

» **ଇତରପଦେଶାଦ୍ଧିତାକରଣାଦିଦୋଷପ୍ରସକ୍ତିଃ ।।୨୧।।**

ବ୍ରହ୍ମ ହିଁ ଜୀବରୂପରେ ଉତ୍ପନ୍ନ ହୋଇଥାଏ, ଏଭଳି କହିବା ଦ୍ୱାରା ବ୍ରହ୍ମରେ ନିଜର ହିତ ନ କରି ଅଥବା ଅହିତ ନ କରିବା ଆଦି ଦୋଷ ଆସିପାରେ ।

» **ଅଧିକଂ ତୁ ଭେଦନିର୍ଦ୍ଦେଶାତ୍ ।। ୨୨ ।।**

କିନ୍ତୁ (ବ୍ରହ୍ମ ଜୀବ ନୁହେଁ, ବରଂ ତାହାଦ୍ୱାରା): ଅଧିକ ଅଟେ କାହିଁକି ନାଁ ଜୀବାତ୍ମାଠାରେ ବ୍ରହ୍ମର ଭେଦ ବତାଯାଇଛି ।

» **ଅଶ୍ମାଦିବଚ୍ଚ ତଦନୁପପତ୍ତିଃ ।। ୨୩ ।।**

ଯଥା : (ଜଡ଼) ପଥର ଆଦି ସଦୃଶ (ଅଜ୍ଞ) ଜୀବାତ୍ମା ମଧ୍ୟ ବ୍ରହ୍ମଠାରୁ ଭିନ୍ନ ଅଟେ, ଏଣୁ ଜୀବାତ୍ମା ଏବଂ ପରମାତ୍ମାଙ୍କର ଅତ୍ୟନ୍ତ ଅଭେଦ ସିଦ୍ଧ ହେଉନାହିଁ ।

» **ଉପସଂହାରଦର୍ଶନାନ୍ନେତି ଚେନ୍ନ କ୍ଷୀରବଦ୍ଧି ।।୨୪ ।।**

ଯଦି କୁହ କି, ଲୋକମାନଙ୍କଠାରେ ଘଟ ଆଦି ନିର୍ମାଣ ପାଇଁ ସାଧନ ସାମଗ୍ରୀର ସଂଗ୍ରହ ଦେଖାଯାଉଛି, (କିନ୍ତୁ ବ୍ରହ୍ମ ନିକଟରେ କୌଣସି ସାଧନ ନାହିଁ) ଏଣୁ ବ୍ରହ୍ମ ଜଗତର କର୍ତ୍ତା ନୁହେଁ ତେବେ ଏଭଳି କହିବା ଠିକ୍ ନୁହେଁ କାହିଁକି ନାଁ ଦୁଗ୍ଧ ସଦୃଶ (ବ୍ରହ୍ମକୁ ଅନ୍ୟ ସାଧନମାନଙ୍କର ଅପେକ୍ଷା ରହେନାହିଁ) ।

» **ଦେବାଦିବଦପି ଲୋକେ ।। ୨୫ ।।**

ଲୋକମାନଙ୍କଠାରେ ଦେବତା ଆଦି ସଦୃଶ (ବିନା ଉପକରଣରେ) ମଧ୍ୟ (କାର୍ଯ୍ୟ କରିବାର ଶକ୍ତି ଦେଖାଯାଇଥାଏ) ।

- **କୃତ୍ସ୍ନପ୍ରସକ୍ତ୍ୟଧିକରଣମ୍ । ସୂ.୨୬ - ୨୯**

» **କୃତ୍ସ୍ନପ୍ରସକ୍ତିର୍ନିରବୟବତ୍ୱଶବ୍ଦକୋପୋ ବା ।।୨୬ ।।**

(ବ୍ରହ୍ମକୁ ଜଗତର କାରଣ ମାନିବା ଦ୍ୱାରା) ତାହା ପୂର୍ଣ୍ଣରୂପରେ ଜଗତ ରୂପେ ପରିଣତ ହୋଇଥାଏ, ଏଭଳି ମାନିବା ଦ୍ୱାରା ଦୋଷ ଉପସ୍ଥିତ ହେବ ଅଥବା

ତାହାକୁ ଅବୟବରହିତ ବତାଇବା ଦ୍ୱାରା ଶ୍ରୁତିର ଶବ୍ଦମାନଙ୍କଠାରେ ବିରୋଧ ହେବ ।

» **ଶ୍ରୁତେସ୍ତୁ ଶବ୍ଦମୂଳତ୍ୱାତ୍ ।। ୨୭ ।।**

କିନ୍ତୁ (ଏଭଳି ଦୋଷ ଆସୁନାହିଁ, କାହିଁକି ନାଁ) ଶ୍ରୁତି ଦ୍ୱାରା (ଏହା ସିଦ୍ଧ ହେଉଛି କି ବ୍ରହ୍ମ ଜଗତର କାରଣ ହୋଇ ମଧ ନିର୍ବିକାର ରୂପେ ସ୍ଥିତ ଅଟେ): ବ୍ରହ୍ମର ସ୍ୱରୂପ କିଭଳି ? ଏଥିରେ ବେଦ ହିଁ ପ୍ରମାଣ ଅଟେ (ଏଣୁ ବେଦ ଯେଉଁଭଳି ବର୍ଣ୍ଣନ କରୁଛି, ସେହିଭଳି ତାହାର ସ୍ୱରୂପ ମାନିବା ଦରକାର) ।

» ଆତ୍ମନି ଚୈବଂ ବିଚିତ୍ରାଶ୍ଚ ହି ।। ୨୮ ।।

ଏହା ବ୍ୟତୀତ(ଯୁକ୍ତି ଦ୍ୱାରା ମଧ ଏଥିରେ କୌଣସି ବିରୋଧ ହୁଏନାହିଁ) କାହିଁକି ନାଁ (ଅବୟବରହିତ)ଜୀବାତ୍ମାରେ ମଧ ଏଭଳି ବିଚିତ୍ର ସୃଷ୍ଟି ଦେଖାଯାଇଛି ।

» ସ୍ୱପକ୍ଷଦୋଷାଚ୍ଚ ।। ୨୯ ।।

ତାଙ୍କର ନିଜ ପକ୍ଷରେ ମଧ ଉକ୍ତ ଦୋଷ ଉପସ୍ଥିତ ହୁଏ, ଏଣୁ ମଧ (ପରବ୍ରହ୍ମ ପରମେଶ୍ୱରଙ୍କୁ ଜଗତର କାରଣ ମାନିବା ଠିକ୍ ହେବ) ।

• ସର୍ବୋପେତାଧିକରଣମ୍ । ସୂ.୩୦ - ୩୧

» ସର୍ବୋପେତା ଚ ତଦ୍ଦର୍ଶନାତ୍ ।। ୩୦ ।।

ଏହା ବ୍ୟତୀତ ସେହି ପରାଦେବତା(ପରବ୍ରହ୍ମ ପରମେଶ୍ୱର) ସମସ୍ତ ଶକ୍ତି ସମ୍ପନ୍ନ ଅଟନ୍ତି କାହିଁକି ନାଁ ଶ୍ରୁତି ବର୍ଣ୍ଣନରେ ଏଭଳି ଦେଖାଯାଇଛି ।

» ବିକରଣତ୍ୱାନ୍ନେତି ଚେତ୍ତଦୁକ୍ତମ୍ ।। ୩୧ ।।

(ଶ୍ରୁତିରେ ଉକ୍ତ ପରମାତ୍ମାଙ୍କୁ ) ମନ ଏବଂ ଇନ୍ଦ୍ରିୟାଦି କାରଣରହିତ ବତାଯାଇଛି, ଏଣୁ (ତାହା) ଜଗତର କାରଣ ନୁହେଁ ଏଭଳି କହିଲେ ଉତ୍ତର ନିର୍ଦ୍ଦିଷ୍ଟ ହେଲା ।

• **ପ୍ରୟୋଜନବତ୍ତ୍ୱାଧିକରଣମ୍ । ସୂ.୩୨-୩୩**

» **ନ ପ୍ରୟୋଜନବତ୍ତ୍ୱାତ୍ ।। ୩୨ ।।**

ପରମାତ୍ମା ଜଗତର କାରଣ ହୋଇ ନ ପାରନ୍ତି କାହିଁକି ନାଁ ପ୍ରତ୍ୟେକ କାର୍ଯ୍ୟ କୌଣସି ନାଁ କୌଣସି ପ୍ରୟୋଜନଯୁକ୍ତ ହୋଇଥାଏ (ଏବଂ ପରମାତ୍ମା ପୂର୍ଣ୍ଣକାମ

ହୋଇଥିବା କାରଣରୁ ପ୍ରୟୋଜନରହିତ ଅଟନ୍ତି) ।

» **ଲୋକବତ୍ତୁ ଲୀଳାକୈବଲ୍ୟମ୍ ।। ୩୩ ।।**

କିନ୍ତୁ (ସେହି ପରବ୍ରହ୍ମ ପରମେଶ୍ୱରଙ୍କର ବିଶ୍ୱ ରଚନାରୂପକ କର୍ମରେ ପ୍ରବୃତ୍ତ ହେବା ତ) ଲୋକମାନଙ୍କଠାରେ ଆପ୍ତକାମ ପୁରୁଷଙ୍କ ଭଳି: କେବଳ ଲୀଳାମାତ୍ର ଅଟେ ।

- **ବୈଷମ୍ୟନୈର୍ଘୃଣ୍ୟାଧିକରଣମ୍ । ସୂ.୩୪- ୩୬**

» **ବୈଷମ୍ୟନୈର୍ଘୃଣ୍ୟେ ନ ସାପେକ୍ଷତ୍ୱାତ୍ତଥା ହି ଦର୍ଶୟତି ।। ୩୪ ।।**

ପରମେଶ୍ୱରଙ୍କ ଠାରେ ବିଷମତା ଏବଂ ନିର୍ଦ୍ଦୟତାର ଦୋଷ ରହେ ନାହିଁ କାହିଁକି ନାଁ ସେ ଜୀବମାନଙ୍କର ଶୁଭାଶୁଭ କର୍ମର ଅପେକ୍ଷାରଖି ସୃଷ୍ଟିକ୍ରିୟା କରିଥାନ୍ତି । ଏଭଳି କଥା ଶ୍ରୁତିରେ ଦେଖାଯାଏ ।

» **ନ କର୍ମାବିଭାଗାଦିତି ଚେନ୍ନାନାଦିତ୍ୱାତ୍ ।।୩୫ ।।**

ଯଦି କୁହ ଜଗତ ଉତ୍ପତ୍ତିର ପ୍ରାରମ୍ଭରୁ ଜୀବ ଏବଂ ତାହାର କର୍ମ ବ୍ରହ୍ମଦ୍ୱାରା ବିଭାଜିତ ହୋଇ ନ ଥିଲେ, ଏଣୁ ପରମାତ୍ମା କର୍ମର ଅପେକ୍ଷା ରଖି ସୃଷ୍ଟି କରିଥାନ୍ତି, ଏଭଳି କହିବା ବି ଠିକ୍ ହେବନାହିଁ କାରଣ ଜୀବ ଏବଂ ତାହାର କର୍ମ ଅନାଦି ଅଟେ ।

» **ଉପପଦ୍ୟତେ ଚାପ୍ୟୁପଲଭ୍ୟତେ ଚ ।। ୩୬ ।।**

ଏହା ବ୍ୟତୀତ (ଜୀବ ଏବଂ ତାହାର କର୍ମ ଅନାଦି ହେବା) ଯୁକ୍ତି ଦ୍ୱାରା ମଧ ସିଦ୍ଧ ହେଉଛି: ଏବଂ (ବେଦ ତଥା ସ୍ମୃତି ମାନଙ୍କରେ) ଏହିଭଳି ମଧ ଉପଲବ୍ଧି ବର୍ଣ୍ଣନା ହୋଇଛି ।

- **ସର୍ବଧର୍ମୋପପତ୍ତ୍ୟଧିକରଣମ୍ । ସୂ.୩୭**

» **ସର୍ବଧର୍ମୋପପତ୍ତେଶ୍ଚ ।। ୩୭ ।।**

(ଏହି ଜଗତର କାରଣ ପରବ୍ରହ୍ମଙ୍କଠାରେ) ସମସ୍ତ ଧର୍ମର ସଙ୍ଗତି ହୋଇଛି, ଏଣୁ ମଧ (କୌଣସି ପ୍ରକାରର ବିରୋଧ ନାହିଁ) ।

ଇତି ମହର୍ଷିବ୍ୟାସବିରଚିତେ ବ୍ରହ୍ମସୂତ୍ରେ
ଦ୍ୱିତୀୟାଧ୍ୟାୟସ୍ୟ ପ୍ରଥମଃ ପାଦଃ ।। ୧ ।।

# ଦ୍ୱିତୀୟ ପାଦ

*ସମ୍ବନ୍ଧ - ପ୍ରଥମ ପାଦରେ ମୁଖ୍ୟତଃ ନିଜ ପକ୍ଷରେ ପ୍ରତୀତ ହେଉଥିବା ସମସ୍ତ ଦୋଷକୁ ଖଣ୍ଡନକରି ଏହା ନିଶ୍ଚୟ କରାଗଲା କି ଏହି ଜଗତର ନିମିତ୍ତ କାରଣ ଏବଂ ଉପାଦାନ କାରଣ ପରବ୍ରହ୍ମ ପରମେଶ୍ୱରହିଁ ଅଟନ୍ତି । ଅଧୁନା ଦ୍ୱିତୀୟ ପାଦରେ ଜଗତକାରଣକୁ ସ୍ୱୀକାର କରିବାରେ ଯେଉଁ ସବୁ ଦୋଷ ଲାଗେ, ସେଗୁଡ଼ିକର ଦିଗ୍‌ଦର୍ଶନ କରାଇ ନିଜ ସିଦ୍ଧାନ୍ତ ପୁଷ୍ଟି କରିବା ପାଇଁ ଚେଷ୍ଟା କରାଯାଉଛି । ଏଥିରେ ପ୍ରଥମ ଦଶଗୋଟି ସୂତ୍ରରେ ସାଂଖ୍ୟୋକ୍ତ ପ୍ରଧାନକୁ ଜଗତର କାରଣ ମାନିବା ଯୁକ୍ତିସଙ୍ଗତ ନୁହେଁ ।*

- **ରଚନାଽନୁପପତ୍ୟଧିକରଣମ୍ । ସୂ. ୧-୧୦**

» **ରଚନାଽନୁପପତ୍ତେଶ୍ଚ ନାନୁମାନମ୍ ।।୧।।**

ଏହା ବ୍ୟତୀତ ଯାହା କେବଳ ଅନୁମାନ ଅଟେ(ବେଦ ଦ୍ୱାରା ଯାହାଙ୍କର ବ୍ରହ୍ମଠାରୁ ପୃଥକ୍ ସତ୍ତା ସିଦ୍ଧ ହୋଇନାହିଁ) ତାହା ପ୍ରଧାନ: ଜଗତର କାରଣ ନୁହେଁ : କାହକି ନାଁ ତାହା ଦ୍ୱାରା ବିଭିନ୍ନ ପ୍ରକାରର ରଚନା ସମ୍ଭବ ହୁଏ ନାହିଁ ।

» **ପ୍ରବୃତ୍ତେଶ୍ଚ ।।୨।।**

ଜଗତର ରଚନା କରିବାପାଇଁ ଜଡ଼ ପ୍ରକୃତିରେ ପ୍ରବୃତ୍ତ ହେବା ମଧ ସିଦ୍ଧ ହେଉନାହିଁ (ଏଣୁ ପ୍ରଧାନ ଏହି ଜଗତର କାରଣ ନୁହେଁ) ।

» **ପୟୋଽମ୍ବୁବଚ୍ଛେତ୍ତତ୍ରାପି ।।୩।।**

ଯଦି କୁହକି, ଦୁଗ୍ଧ ଏବଂ ଜଳ ସଦୃଶ (ଜଡ଼ ପ୍ରଧାନର ସୃଷ୍ଟି ରଚନା କରିବାପାଇଁ ପ୍ରବୃତ୍ତ ହେବା ସମ୍ଭବ ଅଟେ) ତେବେ ସେଥିରେ ମଧ ଚେତନର ସହଯୋଗ ହୋଇଥାଏ । ଅତଃ କେବଳ ଜଡ଼ରେ ପ୍ରବୃତ୍ତି ନ ହୋଇଥିବାରୁ ତାହାଦ୍ୱାରା ଜଗତର ରଚନା ଅସମ୍ଭବ ହୁଏ ।

» **ବ୍ୟତିରେକାନବସ୍ଥିତେଶ୍ଚାନପେକ୍ଷତ୍ୱାତ୍ ।।୪।।**

ଏହା ବ୍ୟତୀତ ସାଂଖ୍ୟମତରେ ପ୍ରଧାନ ବ୍ୟତିରେକ ଦ୍ୱିତୀୟ କେହି ତାହାର

ପ୍ରବୃତ୍ତି ଅଥବା ନିବୃତ୍ତିର ନିୟାମକ ଭାବରେ ପରିଗଣିତ ହୁଅନ୍ତି ନାହିଁ, ଏଣୁ ପ୍ରଧାନକୁ କାହାର ଅପେକ୍ଷା ରହେନାହିଁ, (ଏଣୁ ପ୍ରଧାନ କେବେ ସୃଷ୍ଟିରୂପରେ ପରିଣତ ହୁଏ, କେବେ ମଧ ହୁଏ ନାହିଁ-- ଏହିକଥା ସମ୍ଭବ ନୁହେଁ) ।

» **ଅନ୍ୟତ୍ରାଭାବାଚ୍ଚ ନ ତୃଣାଦିବତ୍ ।।୫।।**

ଅନ୍ୟ ସ୍ଥାନରେ ସେହିଭଳି ପରିଣାମର ଅଭାବ ହୋଇଥିବାରୁ ତୃଣ ଆଦି ସଦୃଶ ପ୍ରଧାନକୁ ଜଗତ୍ ରୂପରେ ପରିଣତ ହେବା ସିଦ୍ଧ ହେଉନାହିଁ ।

» **ଅଭ୍ୟୁପଗମେଽପ୍ୟର୍ଥାଭାବାତ୍ ।।୬।।**

ଅନୁମାନ ଦ୍ୱାରା ପ୍ରଧାନରେ ସୃଷ୍ଟି ରଚନାର ସ୍ୱାଭାବିକ ପ୍ରବୃତ୍ତି ସ୍ୱୀକାର କରିନେବା ଦ୍ୱାରା ମଧ କୌଣସି ପ୍ରୟୋଜନ ହେଉନଥିବାରୁ ଏଭଳି ମାନିବା ବ୍ୟର୍ଥ ।

» **ପୁରୁଷାଶ୍ମବଦିତି ଚେତ୍ତଥାପି ।।୭।।**

ଯଦି କୁହ ଅନ୍ଧ ଏବଂ ପଙ୍ଗୁ ବ୍ୟକ୍ତି ତଥା ଲୁହା ଏବଂ ଚୁମ୍ବକର ସଂଯୋଗ ସଦୃଶ (ପ୍ରକୃତି ପୁରୁଷର ସମୀପତା ହିଁ ପ୍ରକୃତିକୁ ସୃଷ୍ଟି ରଚନାରେ ପ୍ରବୃତ୍ତ କରିଦେଇଥାଏ) : ତେବେ ଏହିଭଳି ମାନିବା ଦ୍ୱାରା ମଧ (ସାଂଖ୍ୟ ସିଦ୍ଧାନ୍ତ ସିଦ୍ଧି ହୁଏ ନାହିଁ) ।

» **ଅଙ୍ଗିତ୍ୱାନୁପପତ୍ତେଶ୍ଚ ।।୮।।**

ଅଙ୍ଗାଙ୍ଗୀ ଭାବ (ସତ୍ତ୍ୱାଦି ଗୁଣମାନଙ୍କର ଉତ୍କର୍ଷ ଏବଂ ଅପକର୍ଷ)ର ସିଦ୍ଧି ନ ହେବା କାରଣରୁ ମଧ(କେବଳ ପ୍ରଧାନ ଏହି ଜଗତର କାରଣ ଭାବରେ ଗ୍ରହଣ ହୋଇପାରନ୍ତି ନାହିଁ)

» **ଅନ୍ୟଥାଽନୁମିତୌ ଚ ଜ୍ଞଶକ୍ତିବିୟୋଗାତ୍ ।।୯।।**

ଅନ୍ୟ ପ୍ରକାରେ ସାମ୍ୟାବସ୍ଥା ଭଙ୍ଗହେବାର ଅନୁମାନ କରିନେବା ଦ୍ୱାରା ମଧ ପ୍ରଧାନରେ ଜ୍ଞାନଶକ୍ତି ନ ହେବା କାରଣରୁ (ଗୃହ, ଘଟ, ପଟ ଆଦି ସଦୃଶ ବୁଦ୍ଧିପୂର୍ବକ ରଚନା କରାଯାଉଥିବା ବସ୍ତୁମାନଙ୍କର ଉତ୍ପତ୍ତି ତାହା ଦ୍ୱାରା ହୋଇ ନ ପାରେ) ।

» **ବିପ୍ରତିଷେଧାଚ୍ଚାସମଞ୍ଜସମ୍ ।।୧୦।।**

ପରସ୍ପର ବିରୋଧୀ କଥାମାନଙ୍କର ବର୍ଣ୍ଣନା କରିବା ଦ୍ୱାରା ମଧ୍ୟ ସାଂଖ୍ୟଦର୍ଶନ ସମୀଚୀନ ହୁଏ ନାହିଁ ।

• **ମହଦ୍ଦୀର୍ଘାଧିକରଣମ୍ । ସୂ ୧୧**

» **ମହଦ୍ଦୀର୍ଘବଦ୍ବା ହ୍ରସ୍ୱପରିମଣ୍ଡଳାଭ୍ୟାମ୍ ।।୧୧।।**

ହ୍ରସ୍ୱ ତଥା ପରିମଣ୍ଡଳ (ଅର୍ଥାତ୍ ଦୁଇ ଅଣୁଯୁକ୍ତ ଓ ପରମାଣୁ ଯୁକ୍ତ) ସାହାଯ୍ୟରେ ମହତ୍ ଏବଂ ଦୀର୍ଘ (ତ୍ର୍ୟଣୁକ)ର ଉତ୍ପତ୍ତି ବତାଇଲା ଭଳି ହୋଇଥାଏ । (ବୈଶେଷିକମାନଙ୍କ ଦ୍ୱାରା ପ୍ରତିପାଦିତ ସମସ୍ତ କଥା ଅସମଞ୍ଜସ-- ଅସଙ୍ଗତ ଅଟେ ।)

• **ପରମାଣୁଜଗଦକାରଣତ୍ୱାଧିକରଣମ୍ । ସୂ. ୧୨-୧୭**

» **ଉଭୟଥାଽପି ନ କର୍ମାତସ୍ତଦଭାବଃ ।।୧୨।।**

ଉଭୟ ପ୍ରକାରେ ପରମାଣୁ ମଧ୍ୟରେ କର୍ମ ହେବା ସିଦ୍ଧ ହୋଇ ନ ଥାଏ, ଏଣୁ ପରମାଣୁମାନଙ୍କ ସଂଯୋଗରେ ଦ୍ୱିଅଣୁ ଆଦି ଉତ୍ପତ୍ତିର କ୍ରମ ସାହାଯ୍ୟରେ ଜଗତର ଜନ୍ମ ଆଦି ହେବା ସମ୍ଭବ ନୁହେଁ ।

» **ସମବାୟାଭ୍ୟୁପଗମାଚ୍ଚ ସାମ୍ୟାଦନବସ୍ଥିତେଃ ।।୧୩।।**

ପରମାଣୁ ବାଦରେ ସମବାୟ ସମ୍ବନ୍ଧକୁ ସ୍ୱୀକାର କରାଯାଇଛି ଏଣୁ ମଧ୍ୟ ପରମାଣୁ କାରଣବାଦ ସିଦ୍ଧ ହୋଇନ ପାରେ): କାହିଁକି ନାଁ କାର୍ଯ୍ୟ ଏବଂ କାରଣ ସଦୃଶ ସମବାୟ ଏବଂ ସମବାୟୀ ମଧ୍ୟରେ ବି ଭିନ୍ନତାରେ ସମାନତା ରହିଛି, ଏଣୁ ସେଥିରେ ଅନବସ୍ଥା ଦୋଷର ପ୍ରାପ୍ତି ହୋଇଯିବାରୁ ପରମାଣୁମାନଙ୍କ ସଂଯୋଗରେ ଜଗତର ଉତ୍ପତ୍ତି ହୋଇ ନ ପାରେ ।

» **ନିତ୍ୟମେବ ଚ ଭାବାତ୍ ।।୧୪।।**

ଏହା ବ୍ୟତୀତ (ପରମାଣୁ ମଧ୍ୟରେ ପ୍ରବୃତ୍ତି ଅଥବା ନିବୃତ୍ତିର କର୍ମ ସ୍ୱଭାବିକ ମାନିବା ଦ୍ୱାରା) ସବୁବେଳ ପାଇଁ ସୃଷ୍ଟି ଅଥବା ପ୍ରଳୟର ସତ୍ତା ନିର୍ମିତ ହୋଇ ରହେ । ଏଣୁ (ପରମାଣୁ କାରଣବାଦ ଅସଙ୍ଗତ ଅଟେ) ।

» **ରୂପାଦିମତ୍ତ୍ୱାଚ୍ଚ ବିପର୍ଯ୍ୟୟୋ ଦର୍ଶନାତ୍ ।।୧୫।।**

ତଥା ପରମାଣୁମାନଙ୍କୁ ରୂପ, ରସ ଆଦି ଗୁଣଯୁକ୍ତ ଭାବରେ ଗ୍ରହଣ କରାଯାଇଛି,

ଏଣୁ ଏଥିରେ ନିତ୍ୟତାର ବିପରୀତ ଅନିତ୍ୟତାର ଦୋଷ ଉପସ୍ଥିତ ହୋଇଥାଏ: କାହିଁକି ନାଁ ଏହିଭଳି ଦେଖାଯାଏ ।

» ଉଭୟଥା ଚ ଦୋଷାତ୍ ।।୧୬।।

ପରମାଣୁମାନଙ୍କୁ ନ୍ୟୂନାଧିକତା ଗୁଣଯୁକ୍ତ ମାନିନେବା ଅଥବା ଗୁଣ ରହିତ ଭାବରେ ମାନିନେବା କିମ୍ବା ଉଭୟ ପ୍ରକାରରେ ମାନିନେବା ଦ୍ୱାରା ଦୋଷ ହୋଇଥାଏ, ଏଣୁ (ପରମାଣୁ ବାଦ ସିଦ୍ଧ ହୁଏନାହିଁ) ।

» ଅପରିଗ୍ରହାଚ୍ଚାତ୍ୟନ୍ତମନପେକ୍ଷା ।।୧୭।।

ପରମାଣୁ କାରଣବାଦକୁ ଶିଷ୍ଟ ପୁରୁଷମାନେ ଗ୍ରହଣ କରିନାହାନ୍ତି, ଏଣୁ ମଧ ଏହାର ଅତ୍ୟନ୍ତ ଉପେକ୍ଷା ଦରକାର ।

• ସମୁଦାୟାଧିକରଣମ୍ । ସୂ. ୧୮-୨୭

» ସମୁଦାୟ ଉଭୟହେତୁକେଽପି ତଦ୍‌ପ୍ରାପ୍ତିଃ ।।୧୮।।

ପରମାଣୁ କାରଣରୁ ବାହ୍ୟ ସମୁଦାୟ ଏବଂ ସ୍କନ୍ଧ ହେତୁ ଆଭ୍ୟନ୍ତର ସମୁଦାୟ ଏହିଭଳି ଦୁଇପ୍ରକାରର ସମୁଦାୟକୁ ସ୍ୱୀକାର କରିନେବା ଦ୍ୱାରା ମଧ ଉକ୍ତ ସମୁଦାୟର ପ୍ରାପ୍ତି ସିଦ୍ଧି ହୋଇ ନ ଥାଏ ।

» ଇତରେତରପ୍ରତ୍ୟୟତ୍ୱାଦିତି ଚେନ୍ନୋତ୍ପତ୍ତିମାତ୍ରନିମିତ୍ତତ୍ୱାତ୍ ।। ୧୯।।

ଯଦି କୁହ, ଅବିଦ୍ୟା, ସଂସ୍କାର, ବିଜ୍ଞାନ ଆଦି ମଧରେ ଗୋଟିଏ ଗୋଟିଏ ଭିନ୍ନ ଭିନ୍ନ କାରଣରୁ ହୋଇଥାଆନ୍ତି ତାହେଲେ ସେମାନଙ୍କ ସାହାଯ୍ୟରେ ସମୁଦାୟର ସିଦ୍ଧି ହୋଇପାରେ ତେବେ ଏହା ଠିକ୍ ନୁହେଁ: କାହିଁକି ନାଁ ଏହି ଅବିଦ୍ୟା ଆଦି ଉତ୍ତରୋତ୍ତରର ଉତ୍ପତ୍ତି ମାତ୍ର ଦ୍ୱାରା ହିଁ ନିମିତ୍ତ ମାନ୍ୟତା ମିଳିଛି । (ସମୁଦାୟ ଅଥବା ସଂଘାତରେ ନୁହେଁ: ଅତଃ ଏହା ଦ୍ୱାରା ମଧ ସମୁଦାୟର ସିଦ୍ଧି ହୋଇ ନ ପାରେ ।)

» ଉତ୍ତରୋତ୍ପାଦେ ଚ ପୂର୍ବାନୁରୋଧାତ୍ ।।୨୦।।

ତଥା ପରେ ହେବାକୁ ଥିବା ଭାବର ଉତ୍ପତ୍ତି ସମୟରେ ପ୍ରଥମ କ୍ଷଣରେ ବିଦ୍ୟମାନ କାରଣର ନାଶ ହୋଇ ଯାଇଥାଏ, ଏଣୁ ପୂର୍ବୋକ୍ତ ଅବିଦ୍ୟାଦି କାରଣରୁ ସଂସ୍କାରାଦି ଉତ୍ତରୋତ୍ତର ଭାବର ଉତ୍ପତ୍ତିରେ କାରଣ ହୋଇ ନ ପାରେ ।

» ଅସତି ପ୍ରତିଜ୍ଞୋପରୋଧୋ ଯୌଗପଦ୍ୟମନ୍ୟଥା ।। ୨୧।।

କାରଣ ନ ରହିବା ଦ୍ୱାରା ପ୍ରତିଜ୍ଞା ଭଙ୍ଗ ହେବ ନଚେତ କାରଣ ଏବଂ କାର୍ଯ୍ୟର ସତ୍ତା ଏକତ୍ର ଭାବେ ମାନିବାକୁ ପଡ଼ିବ ।

» ପ୍ରତିସଂଖ୍ୟାପ୍ରତିସଂଖ୍ୟାନିରୋଧାପ୍ରାପ୍ତିରବିଚ୍ଛେଦାତ୍ ।।୨୨।।

ପ୍ରତିସଂଖ୍ୟା ନିରୋଧ ଏବଂ ଅପ୍ରତିସଂଖ୍ୟା ନିରୋଧ ଏହି ଉଭୟ ପ୍ରକାରର ନିରୋଧକୁ ସିଦ୍ଧି ଭାବରେ ଗ୍ରହଣ କରାଯାଇ ନ ପାରେ କାହିଁକି ନାଁ ସନ୍ତାନ ପ୍ରବାହର ବିଚ୍ଛେଦ ହୋଇ ନ ପାରେ ।

» ଉଭୟଥା ଚ ଦୋଷାତ୍ ।।୨୩।।

ଉଭୟ ପ୍ରକାରରେ ମଧ ଦୋଷ ଆସିପାରେ ଏଣୁ ସେଭଳି ମାନିବା ଯୁକ୍ତିସଙ୍ଗତ ନୁହେଁ ।

» ଆକାଶେ ଚାବିଶେଷାତ୍ ।।୨୪।।

ଆକାଶ ବିଷୟରେ ମଧ ତାଙ୍କର ମାନ୍ୟତା ଠିକ୍ ନୁହେଁ କାହିଁକି ନାଁ ଅନ୍ୟ ଭାବପଦାର୍ଥ ସାହାଯ୍ୟରେ ସେଥିରେ କୌଣସି ବିଶେଷତା ନାହିଁ ।

» ଅନୁସ୍ମୃତେଶ୍ଚ ।।୨୫।।

ପ୍ରଥମର ଅନୁଭବକୁ ବାରମ୍ବାର ସ୍ମରଣ ହୋଇଥାଏ, ଏଣୁ ଅନୁଭବକାରୀ ଆତ୍ମା କ୍ଷଣିକ ନୁହେଁ । ଏହି ଯୁକ୍ତିରେ ମଧ ବୌଦ୍ଧମତ ଅସଙ୍ଗତ ସିଦ୍ଧ ହେଉଛି ।

» ନାସତୋଽଦୃଷ୍ଟତ୍ୱାତ୍ ।।୨୬।।

ଅସତ୍ ଦ୍ୱାରା କାର୍ଯ୍ୟର ଉତ୍ପତ୍ତି ହୋଇ ନ ପାରେ କାହିଁକି ନାଁ ଏଭଳି ଦେଖାଯାଇ ନାହିଁ ।

» ଉଦାସୀନାନାମପି ଚୈବଂ ସିଦ୍ଧିଃ ।।୨୭।।

ଏହା ବ୍ୟତୀତ ଏହି ପ୍ରକାର ବିନା କର୍ତ୍ତାରେ ସ୍ୱତଃ କାର୍ଯ୍ୟରେ ଉତ୍ପତ୍ତି ମାନିବା ଦ୍ୱାରା ଉଦାସୀନ (କାର୍ଯ୍ୟସିଦ୍ଧ ପାଇଁ ଚେଷ୍ଟା କରୁନଥିବା ବ୍ୟକ୍ତି) ପୁରୁଷଙ୍କର ମଧ କାର୍ଯ୍ୟସିଦ୍ଧି ହୋଇପାରେ ।

• ଅଭାବାଧିକରଣମ୍ । ସୂ. ୨୮-୩୨

» **ନାଭାବ ଉପଲବ୍ଧେଃ ।।୨୮।।**

ଜାଣିବାରେ ଆସିଥିବା ପଦାର୍ଥର ଅଭାବ ନାହିଁ, କାହିଁକି ନାଁ ତାର ଉପଲବ୍ଧି ହୁଏ ।

» **ବୈଧର୍ମ୍ୟଚ୍ଚ ନ ସ୍ୱପ୍ନାଦିବତ୍ ।।୨୯।।**

ଜାଗ୍ରତାବସ୍ଥାରେ ଉପଲବ୍ଧ ହେଉଥିବା ପଦାର୍ଥମାନଙ୍କ ସାହାଯ୍ୟରେ ସ୍ୱପ୍ନ ଆଦିରେ ପ୍ରତୀତ ହେଉଥିବା ପଦାର୍ଥର ଧର୍ମରେ ଭେଦ ହୋଇଥିବା କାରଣରୁ ମଧ (ଜାଗ୍ରତ ଅବସ୍ଥାରେ ଉପଲବ୍ଧ ହେଉଥିବା ପଦାର୍ଥ) ସ୍ୱପ୍ନାଦିରେ ଉପଲବ୍ଧ ପଦାର୍ଥମାନଙ୍କ ଭଳି ମିଥ୍ୟା ନୁହେଁ ।

» **ନ ଭାବୋଽନୁପଲବ୍ଧେଃ ।।୩୦।।**

ବିଜ୍ଞାନବାଦୀମାନଙ୍କ ଦ୍ୱାରା କଳ୍ପିତ ବାସନାର ସତ୍ତା ସିଦ୍ଧ ହୋଇ ନ ଥାଏ କାହିଁକି ନାଁ ତାଙ୍କ ମତରେ ବାହ୍ୟପଦାର୍ଥର ଉପଲବ୍ଧି ହିଁ ହୁଏ ନାହିଁ ।

» **କ୍ଷଣିକତ୍ୱାଚ୍ଚ ।।୩୧।।**

ବୌଦ୍ଧମତାନୁସାରେ ବାସନାର ଆଧାରଭୂତ ବୁଦ୍ଧି ମଧ କ୍ଷଣିକ ଅଟେ । ଏଣୁ ମଧ (ବାସନାର ସତ୍ତା ସିଦ୍ଧ ହେଉନାହିଁ) ।

» **ସର୍ବଥାନୁପପତ୍ତେଶ୍ଚ ।।୩୨।।**

ବିଚାରକରିବା ଦ୍ୱାରା ବୌଦ୍ଧମତରେ ସମସ୍ତ ପ୍ରକାରେ ଅନୁପପତ୍ତି (ଅସଙ୍ଗତି) ଦେଖା ଦେଇଥାଏ: ଏଣୁ ମଧ ବୌଦ୍ଧମତ ଉପାଦେୟ ନୁହେଁ ।

• **ଏକସ୍ମିନ୍ନସମ୍ଭବାଧିକରଣମ୍ । ସୂ. ୩୩-୩୬**

» **ନୈକସ୍ମିନ୍ନସମ୍ଭବାତ୍ ।।୩୩**

ଗୋଟିଏ ସତ୍ୟ ପଦାର୍ଥରେ ପରସ୍ପର ବିରୁଦ୍ଧ ଅନେକ ଧର୍ମ ରହେନାହିଁ । କାହିଁକି ନାଁ ଏହା ଅସମ୍ଭବ ଅଟେ ।

» **ଏବଂ ଚାତ୍ମାକାର୍ତ୍ସ୍ନ୍ୟମ୍ ।।୩୪।।**

ଏହିଭଳି ଆତ୍ମାକୁ ଅପୂର୍ଣ୍ଣ-- ଏକଦେଶୀୟ ଅର୍ଥାତ୍ ଶରୀର ଭଳି ବା ସତ୍ୱଶ ଏକକ ଭାବରେ ମାନିବା ମଧ ଯୁକ୍ତିସଙ୍ଗତ ନୁହେଁ ।

» ନ ଚ ପର୍ଯ୍ୟାୟାଦପ୍ୟବିରୋଧୋ ବିକାରାଦିଭ୍ୟଃ ।।୩୫।।

ଏହା ବ୍ୟତୀତ ଆତ୍ମାକୁ ବଢ଼ିବା-ଛିଡ଼ିବା ଭାବରେ ଗଣନା କରାଯାଇନପାରେ କାରଣ ବିରୋଧର ନିବାରଣ ହୋଇପାରେ ନାହିଁ । କାହିଁକି ନାଁ ଏହିଭଳି ମାନିବା ଦ୍ୱାରା ଆତ୍ମାରେ ବିକାରାଦି ଦୋଷ ପ୍ରାପ୍ତ ହେବ ।

» ଅନ୍ତ୍ୟାବସ୍ଥିତେଶ୍ଚୋଭୟନିତ୍ୟତ୍ୱାଦବିଶେଷଃ ।।୩୬ ।।

ଏବଂ ଅନ୍ତିମ ଅର୍ଥାତ୍ ମୋକ୍ଷାବସ୍ଥାରେ ଯାହା ଜୀବର ପରିମାଣ ଅଟେ ତାହାର ନିତ୍ୟସ୍ଥିତି ସ୍ୱୀକାର କରାଯାଇଛି, ଏଣୁ ଆଦି ଏବଂ ମଧ୍ୟାବସ୍ଥାରେ ତାହାର ଯେଉଁ ମାପ ବା ପରିମାଣ ରହିଛି, ତାହାକୁ ମଧ୍ୟ ନିତ୍ୟ ଭାବରେ ମାନିବା ହୋଇଥାଏ । ଅତଃ କୌଣସି ବିଶେଷତା ରହିଯାଏ ନାହିଁ । (ଯେତେବେଳେ ଶରୀରରେ ତାହାର ଗୋଟିଏ ପ୍ରକାରର ମାପ ସିଦ୍ଧ ହୋଇଯାଏ ।)

• ପତ୍ୟଧିକରଣମ୍ । ସୂ. ୩୭-୪୧

» ପତ୍ୟୁରସାମଞ୍ଜସ୍ୟାତ୍ ।।୩୭।।

ପଶୁପତିଙ୍କର ମତ ମଧ୍ୟ ଆଦରଣୀୟ ନୁହେଁ କାରଣ ତାହା ଯୁକ୍ତିବିରୁଦ୍ଧ ଅଟେ ।

» ସମ୍ବନ୍ଧାନୁପପତ୍ତେଶ୍ଚ ।।୩୮।।

ସମ୍ବନ୍ଧ ସିଦ୍ଧି ନ ହେବା ଦ୍ୱାରା ମଧ୍ୟ (ଏହି ମାନ୍ୟତା ଅସଙ୍ଗତ ଅଟେ) ।

» ଅଧିଷ୍ଠାନାନୁପପତ୍ତେଶ୍ଚ ।।୩୯।।

ଅଧିଷ୍ଠାନର ଉପପତ୍ତି ନ ହେବା କାରଣରୁ ମଧ୍ୟ ଈଶ୍ୱରଙ୍କୁ କେବଳ ନିମିତ୍ତ କାରଣ ମାନିବା ଉଚିତ ନୁହେଁ ।

» କରଣବଚ୍ଚେନ୍ନ ଭୋଗାଦିଭ୍ୟଃ ।।୪୦।।

ଯଦି ଈଶ୍ୱରଙ୍କୁ ଶରୀର, ଇନ୍ଦ୍ରିୟ ଆଦି କାରଣଯୁକ୍ତ ଭାବରେ ମାନି ନିଆଯାଏ, ତେବେ ତାହା ଠିକ୍ ନୁହେଁ କାହିଁକି ନାଁ ଭୋଗ ଆଦି ଦ୍ୱାରା ତାଙ୍କର ସମ୍ବନ୍ଧ ସିଦ୍ଧ ହୋଇଯିବ ।

» ଅନ୍ତବତ୍ତ୍ୱମସର୍ବଜ୍ଞତା ବା ।।୪୧।।

ପାଶୁପତ ମତରେ ଈଶ୍ୱରଙ୍କର ଅନ୍ତ ଯୁକ୍ତ ହେବା ଅଥବା ସର୍ବଜ୍ଞ ନ ହେବାର

ଦୋଷ ଉପସ୍ଥିତ ହେବ ।

- ଉତ୍ପତ୍ୟସମ୍ଭବାଧିକରଣମ୍ । ସୂ. ୪୨-୪୫

» ଉତ୍ପତ୍ୟସମ୍ଭବାତ୍ ।।୪୨।।

ଜୀବର ଉତ୍ପତ୍ତି ସମ୍ଭବ ନୁହେଁ ଏଣୁ (ବାସୁଦେବଙ୍କ ଠାରୁ ଶଙ୍କର୍ଷଣଙ୍କର ଉତ୍ପତ୍ତି ମାନିବା ବେଦବିରୁଦ୍ଧ ପ୍ରତୀତ ହେଉଛି) ।

» ନ ଚ କର୍ତ୍ତୁଃ କରଣମ୍ ।।୪୩।।

ତଥା କର୍ତ୍ତା(ଜୀବାତ୍ମା) ସାହାଯ୍ୟରେ କରଣ (ମନ ଏବଂ ମନ ଦ୍ୱାରା ଅହଂକାର) ର ଉତ୍ପତ୍ତି ମଧ୍ୟ ସମ୍ଭବ ନୁହେଁ ।

» ବିଜ୍ଞାନାଦିଭାବେ ବା ତଦ୍ପ୍ରତିଷେଧଃ ।।୪୪।।

ନିଃସନ୍ଦେହରେ (ପାଞ୍ଚରାତ୍ର ଶାସ୍ତ୍ର ଦ୍ୱାରା) ଭଗବାନଙ୍କର ବିଜ୍ଞାନାଦି ଷଡ଼ବିଧ ଗୁଣର ଶଙ୍କର୍ଷଣ ଆଦିରେ ଭାବ ହେବା ସୂଚିତ କରାଯାଇଛି । ଏହି ମାନ୍ୟତାନୁସାରେ ତାଙ୍କର ଭଗବତ୍ ସ୍ୱରୂପ ହେବା ସିଦ୍ଧ ହେଉଛି । ଏଣୁ ତାଙ୍କର ଉତ୍ପତ୍ତି ବେଦରେ ନିଷିଦ୍ଧ ନୁହେଁ ।

» ବିପ୍ରତିଷେଧାଚ୍ଚ ।।୪୫।।

ଏହି ଶାସ୍ତ୍ରରେ ବିଶେଷ ରୂପେ ଜୀବ ଉତ୍ପତ୍ତିର ନିଷେଧ କରାଯାଇଛି, ଏଣୁ ମଧ୍ୟ (ଏହା ବେଦର ପ୍ରତିକୂଳ ନୁହେଁ) ।

ଇତି ମହର୍ଷିବ୍ୟାସବିରଚିତେ ବ୍ରହ୍ମସୂତ୍ରେ
ଦ୍ୱିତୀୟାଧ୍ୟାୟସ୍ୟ ଦ୍ୱିତୀୟଃ ପାଦଃ ।।୨।।

# ତୃତୀୟ ପାଦ

*ଶାସ୍ତ୍ରରେ ବ୍ରହ୍ମଙ୍କର ଯେଉଁସବୁ ଲକ୍ଷଣ ବତାଯାଇଛି, ସେମାନଙ୍କ ମଧ୍ୟରେ ସ୍ମୃତି ଓ ନ୍ୟାୟକୁ ଯାହା ବିରୋଧ ପ୍ରତୀତ ହେଉଛି, ତାହାର ନିର୍ଣ୍ଣୟାତ୍ମକ ସମାଧାନ ଏହି ଅଧ୍ୟାୟର ପ୍ରଥମ ପାଦରେ ଆମକୁ ମିଳେ । ଦ୍ୱିତୀୟ ପାଦରେ ସିଦ୍ଧାନ୍ତର ସିଦ୍ଧି ପାଇଁ ଅନିଶ୍ୱରବାଦୀ ନାସ୍ତିକମାନଙ୍କ ସିଦ୍ଧାନ୍ତକୁ ଏବଂ ଈଶ୍ୱରଙ୍କୁ ମାନି ମଧ ତାଙ୍କର ଉପାଦାନ କାରଣକୁ ନ ମାନୁଥିବା ସିଦ୍ଧାନ୍ତକୁ ଯୁକ୍ତି ଦ୍ୱାରା ନିରାକରଣ କରାଯାଇଛି । ଏହା ସହିତ ଭାଗବତ ମତରେ ଯିଏ ଏହି ଗ୍ରନ୍ଥର ସିଦ୍ଧାନ୍ତକୁ ବିରୋଧ ପ୍ରତିପାଦିତ କରୁଛି, ତାହାର ସମାଧାନ ଉକ୍ତ ପାଦରେ କରାଯାଇଛି । ଏବେ ପୂର୍ବ ପ୍ରତିଜ୍ଞାନୁସାରେ ପରବ୍ରହ୍ମଙ୍କୁ ସମସ୍ତ ପ୍ରପଞ୍ଚର ଅଭିନ୍ନ ନିମିତ୍ତୋପାଦନ କାରଣ ମାନିବା ପାଇଁ ଯେଉଁ ଶ୍ରୁତିବାକ୍ୟର ବିରୋଧ ଦେଖାଯାଏ ତାହାର ସମାଧାନ ଏବଂ ଜୀବାତ୍ମାର ସ୍ୱରୂପ ନିର୍ଣ୍ଣୟ କରିବାପାଇଁ ତୃତୀୟ ପାଦ ବର୍ଣ୍ଣିତ ହୋଇଛି । ଶ୍ରୁତିମାନଙ୍କରେ କେଉଁଠି କୁହାଯାଇଛି, ପରମେଶ୍ୱର ପ୍ରଥମେ ତେଜର ରଚନା କରିଛନ୍ତି । ତାପରେ ତହିଁରୁ ଜଳ ଓ ଜଳରୁ ଅନ୍ନ ଏହି କ୍ରମରେ ଜଗତର ରଚନା କରିଛନ୍ତି । ଅନ୍ୟ କେଉଁଠାରେ କୁହାଯାଇଛି, ପ୍ରଥମେ ଆକାଶର ରଚନା ହୋଇଛି ପରେ ବାୟୁ ଆଦିର କ୍ରମ ସହିତ ଜଗତର ଉତ୍ପତ୍ତି ହୋଇଛି । ଏହିଭଳି ବିକଳ୍ପମାନଙ୍କର ସମାଧାନ କରିବା ପାଇଁ ପୂର୍ବପକ୍ଷର ଉତ୍ଥାପନ ଏହି ଅଧ୍ୟାୟରେ ଆମକୁ ମିଳେ ।*

- **ବିୟଦଧିକରଣମ୍ । ସୂ. ୧-୭**

» **ନ ବିୟଦଶ୍ରୁତେଃ ।।୧।।**

ଆକାଶ ଉତ୍ପନ୍ନ ହୁଏନାହିଁ, କାହିଁକି ନାଁ ତାହାର ଉତ୍ପତ୍ତି ଶୁଣାଯାଏ ନାହିଁ ।୧

» **ଅସ୍ତି ତୁ ।।୨।।**

କିନ୍ତୁ ଆକାଶର ଉତ୍ପତ୍ତି ବର୍ଣ୍ଣନା ମଧ ଅନ୍ୟ ଶ୍ରୁତିରେ ହୋଇଛି ।୨

» **ଗୌଣ୍ୟସମ୍ଭବାତ୍ ।।୩।।**

ଆକାଶର ଉତ୍ପତ୍ତି ଅସମ୍ଭବ ହୋଇଥିବା କାରଣରୁ ଏହି ଶ୍ରୁତି ଗୌଣ ଅଟେ । ୩

» ଶବ୍ଦାଚ୍ଚ ।।୪।।

ଶବ୍ଦ ପ୍ରମାଣରେ ମଧ୍ୟ ଏହା ସିଦ୍ଧ ହେଉଛି କି, ଆକାଶ ଉତ୍ପନ୍ନ ହୋଇ ନ ପାରେ । ୪

» ସ୍ୟାଚ୍ଚୈକସ୍ୟ ବ୍ରହ୍ମଶବ୍ଦବତ୍ ।।୫।।

ପୁନଶ୍ଚ ବ୍ରହ୍ମ ଶବ୍ଦ ଭଳି କୌଣସି ଗୋଟିଏ ଶାଖାର ବର୍ଣ୍ଣନା ପାଇଁ ଗୌଣ ରୂପରେ ମଧ୍ୟ ଆକାଶର ଉତ୍ପତ୍ତି କଥା ବର୍ଣ୍ଣନା କରାଯାଇପାରେ ।୫

» ପ୍ରତିଜ୍ଞାହାନିରବ୍ୟତିରେକାଚ୍ଛବ୍ଦେଭ୍ୟଃ ।।୬।।

ବ୍ରହ୍ମଙ୍କ କାର୍ଯ୍ୟଠାରୁ ଆକାଶକୁ ଅଲଗା ନ ମାନିବା ଦ୍ୱାରା ଏକକ ଜ୍ଞାନ ସାହାଯ୍ୟରେ ସମସ୍ତଙ୍କର ଜ୍ଞାନ ସମ୍ବନ୍ଧୀ ପ୍ରତିଜ୍ଞାକୁ ରକ୍ଷା କରାଯାଇପାରେ : ଶ୍ରୁତିର ଶବ୍ଦମାନଙ୍କ ସାହାଯ୍ୟରେ ଏହା ସିଦ୍ଧ ହେଉଛି ।୬

» ଯାବଦ୍ୱିକାରଂ ତୁ ବିଭାଗୋ ଲୋକବତ୍ ।।୭।।

ତଥା ସାଧାରଣ ଲୌକିକି ବ୍ୟବହାର ଭଳି ବିକାର ମାତ୍ର ଦ୍ୱାରା ସବୁକିଛି ବ୍ରହ୍ମର ହିଁ ବିଭାଗ ବା କାର୍ଯ୍ୟ ଅଟେ ।୭

- ମାତରିଶ୍ୱାଧିକରଣମ୍ । ସୂ. ୮

» ଏତେନ ମାତରିଶ୍ୱା ବ୍ୟାଖ୍ୟାତଃ ।।୮।।

ଏଥିରୁ ଅର୍ଥାତ୍ ଆକାଶର ଉତ୍ପତ୍ତି ସିଦ୍ଧ କରୁଥିବା କଥନରୁ ବାୟୁର ଉତ୍ପନ୍ନ ହେବା କଥା ବର୍ଣ୍ଣନା କରାଯାଇଛି ।୮

- ଅସମ୍ଭବାଧିକରଣମ୍ । ସୂ. ୯

» ଅସମ୍ଭବସ୍ତୁ ସତୋଽନୁପପତ୍ତେଃ ।।୯।।

ସତ୍ ଶବ୍ଦବାଚ୍ୟ ବ୍ରହ୍ମଙ୍କ ବ୍ୟତୀତ (ଅନ୍ୟ କାହାର ଉତ୍ପନ୍ନ ନ ହେବା): ତ ଅସମ୍ଭବ ଅଟେ । କାହିଁକି ନାଁ ଅନ୍ୟ କାହାର ଉତ୍ପନ୍ନ ନ ହେବା ଯୁକ୍ତି ଏବଂ ପ୍ରମାଣ ଦ୍ୱାରା ସିଦ୍ଧ ହୋଇପାରେ ନାହିଁ ।୯

• ତେଜୋଽଧିକରଣମ୍ । ସୂ.୧୦

» ତେଜୋଽତସ୍ତଥା ହ୍ୟାହ ।।୧୦।।

ତେଜ: ଏହି ବାୟୁ ସାହାଯ୍ୟରେ ଉତ୍ପନ୍ନ ହୋଇଥିବା କଥା ଅନ୍ୟତ୍ର ମଧ ବର୍ଣ୍ଣିତ ହୋଇଛି ।୧୦

• ଅବଧିକରଣମ୍ । ସୂ.୧୧

» ଆପଃ ।।୧୧

ଜଳ : (ତେଜଠାରୁ ଉତ୍ପନ୍ନ ହୋଇଛି) ।୧୧

• ପୃଥିବ୍ୟଧିକରାଧିକାରଣମ୍ । ସୂ.୧୨

ପୃଥିବ୍ୟଧିକାରରୂପଶବ୍ଦାନ୍ତରେଭ୍ୟଃ ।।୧୨।।

ଏହି ପ୍ରକରଣରେ ଅନ୍ନ ନାମରେ ପୃଥିବୀର ହିଁ ବର୍ଣ୍ଣନା କରାଯାଇଛି : କାହିଁକି ନାଁ ପାଞ୍ଚତତ୍ତ୍ୱର ଉତ୍ପତ୍ତି ପ୍ରକରଣ ରହିଛି : ସେଥିରେ ବର୍ଣ୍ଣନା କରାଯାଇଥିବା କଳାରୂପ ମଧ ପୃଥିବୀର ବୋଲି ସ୍ୱୀକାର କରାଯାଇଛି ଏବଂ ଅନ୍ୟ ଶ୍ରୁତିରେ ମଧ ଜଳଠାରୁ ପୃଥିବୀର ଉତ୍ପତ୍ତି ବୋଲି କୁହାଯାଇଛି ।୧୨

• ତଦଭିଧାନାଧିକରଣମ୍ । ସୂ.୧୩

» ତଦ୍‌ଭିଧାନାଦେବ ତୁ ତଲ୍ଲିଙ୍ଗାତ୍ସଃ ।।୧୩।।

ସେହି ତତ୍ତ୍ୱକୁ ଭଲ ଭାବରେ ଚିନ୍ତନ କରିବାର କଥନ ହେବା ଦ୍ୱାରା ସିଦ୍ଧ ହେଉଛି କି, ସେହି ପରମାତ୍ମା ହିଁ ସେହି ସମସ୍ତଙ୍କର ରଚନା କରିଛନ୍ତି । କାହିଁକି ନାଁ ଉକ୍ତ ଲକ୍ଷଣ ତାଙ୍କରି ଅନୁରୂପ ଅଟେ । ୧୩

• ବିପର୍ଯ୍ୟାଧିକରଣମ୍ । ସୂ. ୧୪

» ବିପର୍ଯ୍ୟୟେଣ ତୁ କ୍ରମୋଽତ ଉପପଦ୍ୟତେ ଚ ।।୧୪।।

କିନ୍ତୁ ଏହି ଉତ୍ପତ୍ତି କ୍ରମରେ ପ୍ରଳୟର କ୍ରମ ବିପରୀତ ହୋଇଥାଏ: ଏଭଳି ହେବା ଯୁକ୍ତିସଙ୍ଗତ ଅଟେ । ପୁନଶ୍ଚ ସ୍ମୃତିରେ ମଧ ଏହିଭଳି ବର୍ଣ୍ଣନା କରାଯାଇଛି । ୧୪

• ଅନ୍ତରାବିଜ୍ଞାନାଧିକରଣମ୍ । ସୂ. ୧୫

» **ଅନ୍ତରା ବିଜ୍ଞାନମନସୀ କ୍ରମେଣ ତଲ୍ଲିଙ୍ଗାଦିତି ଚେନ୍ନାବିଶେଷାତ୍ ।।୧୫।।**

ଯଦି କୁହକି, ଇନ୍ଦ୍ରିୟ ଏବଂ ମନ ଉତ୍ପତ୍ତି କ୍ରମ ଦୃଷ୍ଟିରେ ପରମାତ୍ମା ଏବଂ ଆକାଶ ଆଦି ଭୂତଗଣଙ୍କ ମଧ୍ୟରେ ହେବା ଆବଶ୍ୟକ ତାହେଲେ ଶ୍ରୁତିରେ ଏହି ନିଶ୍ଚୟ କରିପାରୁଥିବା ଲିଙ୍ଗ ବା ପ୍ରମାଣ ପ୍ରାପ୍ତ ହୋଇପାରେ । ତେବେ ଏଭଳି କହିବା ଠିକ୍ ନୁହେଁ କାହିଁକି ନାଁ ଶ୍ରୁତିରେ କୌଣସି କ୍ରମବିଶେଷର ବର୍ଣ୍ଣନା ନାହିଁ ।୧୫

● **ଚରାଚରବ୍ୟପାଶ୍ରୟାଧିକରଣମ୍ । ସୂ. ୧୬**

» **ଚରାଚରବ୍ୟପାଶ୍ରୟସ୍ତୁ ସ୍ୟାଉଦ୍‌ବ୍ୟପଦେଶୋ ଭାକ୍ତସ୍ତଭାବଭାବିତ୍ୱାତ୍ ।।୧୬।।**

କିନ୍ତୁ ଚରାଚର ଶରୀରକୁ ନେଇ କଥିତ ହୋଇଥିବା ସେହି ଜନ୍ମ-ମରଣ ଆଦିର କଥନ ଜୀବାତ୍ମା ପାଇଁ ଗୌଣ ରୂପରେ ହୋଇପାରେ । କାହିଁକି ନାଁ ସେ ତଦ୍‌ତଦ୍ ଶରୀର ଭାବରେ ଭାବିତ ହୋଇଥାଏ । ୧୬

● **ଆତ୍ମାଧିକରଣମ୍ । ସୂ. ୧୭**

» **ନାତ୍ମାଽଶ୍ରୁତେର୍ନିତ୍ୟତ୍ୱାଚ୍ଚ ତାଭ୍ୟଃ ।।୧୭।।**

ଜୀବାତ୍ମା ବାସ୍ତବରେ ଉତ୍ପନ୍ନ ହୁଏନାହିଁ । କାହିଁକି ନାଁ ଶ୍ରୁତିରେ କୌଣସି ଠାରେ ଜୀବାତ୍ମାର ଉତ୍ପତ୍ତି ବତାଯାଇନାହିଁ । ଏହା ବ୍ୟତୀତ ସେହି ଶ୍ରୁତିମାନଙ୍କ ସାହାଯ୍ୟରେ ତାଙ୍କର ନିତ୍ୟତା ସିଦ୍ଧ କରାଯାଇଛି, ଏଣୁ ମଧ ଜୀବାତ୍ମାର ଉତ୍ପତ୍ତିକୁ ମାନ୍ୟତା ଦିଆଯାଇ ନ ପାରେ ।୧୭

● **ଜ୍ଞାଧିକରଣମ୍ । ସୂ. ୧୮**

» **ଜ୍ଞୋଽତ ଏବ ।।୧୮।।**

ସେ ହିଁ ନିତ୍ୟ ଅର୍ଥାତ୍ ଜନ୍ମମରଣ ରହିତ ଅଟନ୍ତି । ତେଣୁ ସେ ଜ୍ଞାତା ।୧୮

● **ଉତ୍କ୍ରାନ୍ତିଗତ୍ୟଧିକରଣମ୍ । ସୂ. ୧୯-୩୨**

» **ଉତ୍କ୍ରାନ୍ତିଗତ୍ୟାଗତୀନାମ୍ ।।୧୯।।**

ଗୋଟିଏ ଜୀବାତ୍ମାଙ୍କ ଶରୀରରୁ ଉତ୍କ୍ରମଣ କରି ପରଲୋକ ଗମନ ଏବଂ ପୁନଃ ପ୍ରତ୍ୟାଗମନ କଥା ଶ୍ରୁତିରେ ବର୍ଣ୍ଣିତ ହୋଇଛି । ଏଥିରୁ ସିଦ୍ଧ ହେଉଛି କି, ଜୀବାତ୍ମା ନିତ୍ୟ ଅଟେ ।୧୯

» ସ୍ୱାତ୍ମନା ଚୋତ୍ତରୟୋଃ ।।୨୦।।

ପରଲୋକ ଗମନ କରିବା ଏବଂ ପ୍ରତ୍ୟାଗମନ କରିବା-- ଏହା ପଛରେ କୁହାଯାଇଥିବା ଉଭୟ କ୍ରିୟାର ସିଦ୍ଧି ସ୍ୱରୂପ ସାହାଯ୍ୟରେ ହିଁ ହୋଇଥାଏ । ଏଣୁ ଆତ୍ମା ମଧ ନିତ୍ୟ ସିଦ୍ଧ ।୨୦

» ନାଣୁରତଚ୍ଛ୍ରୁତେରିତି ଚେନ୍ନେତରାଧିକାରାତ୍ ।।୨୧।।

ଯଦି କୁହକି, ଜୀବାତ୍ମା ଅଣୁ ନୁହଁନ୍ତି କାହିଁକି ନା ଶ୍ରୁତିରେ ତାଙ୍କୁ ଅଣୁ ନ କହି ମହାନ ଓ ବ୍ୟାପକ ବତାଯାଇଛି । ତେବେ ଏହା କହିବା ଠିକ୍ ହେବନାହିଁ । କାହିଁକି ନାଁ ସେଠାରେ ଅନ୍ୟର ଅର୍ଥାତ୍ ପରମାତ୍ମାଙ୍କର ପ୍ରକରଣ ରହିଛି । (ଯେଉଁଠି ଶ୍ରୁତିରେ ଆତ୍ମାକୁ ମହାନ ଓ ବିଭୁ ବତାଯାଇଛି ।)।୨୧।

» ସ୍ୱଶବ୍ଦାନୁମାନାଭ୍ୟାଂ ଚ ।।୨୨।।

ଶ୍ରୁତିରେ ଅଣୁବାଚକ ଶବ୍ଦ ରହିଛି, ତଦ୍ୱାରା ଏବଂ ଅନୁମାନ(ଉପମା)ବାଚକ ଅନ୍ୟ ଶବ୍ଦ ଦ୍ୱାରା ମଧ ଜୀବାତ୍ମାଙ୍କର ଅଣୁତ୍ୱ ସିଦ୍ଧ ହେଉଛି ।୨୨

» ଅବିରୋଧଶ୍ଚନ୍ଦନବତ୍ ।।୨୩।।

ଯେଉଁଭଳି ଗୋଟିଏ ଦେଶରେ ଲଗାଯାଇଥିବା ଚନ୍ଦନ ନିଜ ଗନ୍ଧରୂପ ଗୁଣ ସାହାଯ୍ୟରେ ସର୍ବତ୍ର ବିସ୍ତୃତ ହୋଇଯାଏ, ସେହିଭଳି ଗୋଟିଏ ଦେଶରେ ରହିଥିବା ଆତ୍ମା ବିଜ୍ଞାନ ରୂପ ଗୁଣଦ୍ୱାରା ସମସ୍ତ ଶରୀରକୁ ବ୍ୟାପ୍ତକରି ସୁଖଦୁଃଖ ଆଦିର ଜ୍ଞାତା ହୋଇଯାଇଥାଏ । ଏଣୁ ଏଥିରେ କୌଣସି ବିରୋଧ ନାହିଁ । (ଏଠାରେ ଦେଶ ସ୍ଥାନବାଚକ ଭାବରେ ବ୍ୟବହାର କରାଯାଇଛି ।)।।୨୩।।

» ଅବସ୍ଥିତିବୈଶେଷ୍ୟାଦିତିଚେନ୍ନାଭ୍ୟୁପଗମାଦ୍ଧୃଦି ହି ।।୨୪।।

ଯଦି କୁହ ଚନ୍ଦନ ଆଉ ଆତ୍ମାର ସ୍ଥିତିରେ ଭେଦ ରହୁଛି, ଏଣୁ ଚନ୍ଦନର ଦୃଷ୍ଟାନ୍ତ ଉପଯୁକ୍ତ ନୁହେଁ ତେବେ ତାହା ଠିକ୍ ନୁହେଁ । କାହିଁକି ନାଁ ହୃତ୍‌ଦେଶରେ ତାଙ୍କର ସ୍ଥିତିକୁ ସ୍ୱୀକାର କରାଯାଇଛି ।୨୪।

» ଗୁଣାଦ୍ୱା ଲୋକବତ୍ ।।୨୫।।

ଅଥବା ଏଭଳି ବୁଝିବା ଦରକାର କି, ଅଣୁ ପରିମାଣଯୁକ୍ତ ଜୀବାତ୍ମାର ଚେତନତା ରୂପ ଗୁଣ ସାହାଯ୍ୟରେ ସମଗ୍ର ଶରୀରକୁ ଚେତନାଯୁକ୍ତ କରିଦେବା ସମ୍ଭବ ଅଟେ । କାହିଁକି ନାଁ ଲୋକମାନଙ୍କ ମଧରେ ଏଭଳି ଦେଖାଯାଇଛି ।।୨୫।।

» ବ୍ୟତିରେକୋ ଗନ୍ଧବତ୍ ।।୨୬।।

ଗନ୍ଧ ଭଳି ଗୁଣର ଗୁଣୀଠାରୁ ଭିନ୍ନ ହେବା ସମ୍ଭବ । (ଏଥିରେ କୌଣସି ବିରୋଧଭାବ ନାହିଁ ।)।।୨୬।।

» ତଥା ଚ ଦର୍ଶୟତି ।।୨୭।।

ଏହିଭଳି ଶ୍ରୁତି ଦର୍ଶାଇଛନ୍ତି ।।୨୭।।

» ପୃଥଗୁପଦେଶାତ୍ ।।୨୮।।

ଜୀବାତ୍ମାଙ୍କ ବିଷୟରେ ଅଣୁ ପରମାଣୁ ଠାରୁ ଭିନ୍ନ ଉପଦେଶ ଶ୍ରୁତିରେ ମିଳୁଅଛି । ଏଣୁ ଜୀବାତ୍ମା ଅଣୁ ନୁହେଁ ବିଭୁ ଅଟନ୍ତି ।।୨୮।।

» ତଦ୍‌ଗୁଣସାରତ୍ୱାତ୍ତୁତଦ୍‌ବ୍ୟପଦେଶଃ ପ୍ରାଜ୍ଞବତ୍ ।।୨୯।।

ଉକ୍ତ କଥନ ତ ସେହି ବୁଦ୍ଧି ଆଦିର ପ୍ରଧାନତାକୁ ନେଇ ହୋଇଥାଏ । ଯେଉଁଭଳି ପରମେଶ୍ୱରଙ୍କୁ ଅଣୁ ଆଉ ହୃଦୟରେ ସ୍ଥିତ ଅଙ୍ଗୁଷ୍ଠମାତ୍ର ବୋଲି ବତାଯାଇଛି, ସେହିଭଳି ଜୀବାତ୍ମାଙ୍କ ପାଇଁ ମଧ ବୁଝିବା ଦରକାର ।।୨୯।।

» ଯାବଦାତ୍ମଭାବିତ୍ୱାଚ୍ଚ ନ ଦୋଷସ୍ତଦ୍ଦର୍ଶନାତ୍ ।।୩୦।।

ଯେ ପର୍ଯ୍ୟନ୍ତ ସ୍ଥୂଳ, ସୂକ୍ଷ୍ମ ଅଥବା କାରଣ-- ଏଥିରେ କୌଣସି ଶରୀର ସହିତ ଜୀବାତ୍ମାର ସମ୍ବନ୍ଧ ରହିଛି, ସେ ପର୍ଯ୍ୟନ୍ତ ସେ ଉକ୍ତ ଶରୀର ଅନୁରୂପ ଏକଦେଶୀ ଭଳି ରହିଥାଏ । ଏଣୁ ଉକ୍ତ ଦୋଷ ହୁଏ ନାହିଁ, ଶ୍ରୁତିରେ ଏହିଭଳି ମଧ ଦେଖାଦେଇଛି ।।୩୦।।

» ପୁଂସ୍ତ୍ୱାଦିବତ୍ତ୍ୱସ୍ୟ ସତୋଽଭିବ୍ୟକ୍ତିଯୋଗାତ୍ ।।୩୧।।

ପୁରୁଷତ୍ୱ ଆଦି ଭଳି ପ୍ରଥମରୁ ବିଦ୍ୟମାନ ଏହି କାରଣଶରୀର ଆଦିର ସମ୍ବନ୍ଧ ହିଁ ସୃଷ୍ଟିକାଳରେ ପ୍ରକଟ ହେବାର ଯୋଗ ଅଛି । ଏଣୁ କିଛି ଦୋଷ ନାହିଁ ।।୩୧।।

» ନିତ୍ୟୋପଲବ୍ଧ୍ୟନୁପଲବ୍ଧିପ୍ରସଙ୍ଗୋଽନ୍ୟତରନିୟମୋ ବାନ୍ୟଥା ।।୩୨।।

ଜୀବକୁ ଅନ୍ତଃକରଣ ସମ୍ବନ୍ଧିତ ବିଷୟଜ୍ଞାନ ହୋଇଥାଏ । ଏଭଳି ନ ମାନିବା ଦ୍ୱାରା ତାକୁ ସବୁବେଳ ପାଇଁ ବିଷୟର ଅନୁଭବ ହେବା ଅଥବା କେବେ ନ ହେବା ପ୍ରସଙ୍ଗ ଉପସ୍ଥିତ ହେବ କିମ୍ବା ଆତ୍ମାର ଗ୍ରାହକଶକ୍ତି କିମ୍ବା ବିଷୟର

ଗ୍ରାହ୍ୟଶକ୍ତି ନିୟମନ ପ୍ରତିବନ୍ଧ କଳ୍ପନା କରିବାକୁ ପଡ଼ିବ । (ଏହିଭଳି ସ୍ଥିତିରେ ଅନ୍ତଃକରଣର ସମ୍ବନ୍ଧ ମାନିବା ମଧ ଯୁକ୍ତିସଙ୍ଗତ ଅଟେ ।)।।୩୨।।

- କର୍ତ୍ରଧିକରଣମ୍ । ସୂ. ୩୩-୩୯

» କର୍ତା ଶାସ୍ତ୍ରାର୍ଥବତ୍ତ୍ୱାତ୍ ।।୩୩ ।।

କର୍ତ୍ତା ଜୀବାତ୍ମା ଅଟେ କାହିଁକି ନାଁ ଏଥିରେ ବିଧି ନିଷେଧବୋଧକ ଶାସ୍ତ୍ରର ସାର୍ଥକତା ବିଦ୍ୟମାନ ।।୩୩।।

» ବିହାରୋପଦେଶାତ୍ ।।୩୪।।

ସ୍ୱପ୍ନରେ ସ୍ୱେଚ୍ଛା ସହକାରେ ବିହାର କରିବାର ବର୍ଣ୍ଣନା ରହିଥିବା ଯୋଗୁଁ ମଧ ଏହା ସିଦ୍ଧ ହେଉଛି କି, ଜୀବାତ୍ମା କର୍ତ୍ତା ଅଟେ ।।୩୪।।

» ଉପାଦାନାତ୍ ।।୩୫।।

ଇନ୍ଦ୍ରିୟମାନଙ୍କୁ ଗ୍ରହଣକରି ବିଚରଣ କରିବାର ବର୍ଣ୍ଣନା ହୋଇଥିବାରୁ ମଧ ଏହା ସିଦ୍ଧ ହେଉଛି କି, ଇନ୍ଦ୍ରିୟ ଆଦି ସମ୍ବନ୍ଧରେ ଜୀବାତ୍ମା କର୍ତ୍ତା ଅଟେ ।।୩୫।।

» ବ୍ୟପଦେଶାଚ୍ଚ କ୍ରିୟାୟାଂ ନ ଚେନ୍ନିର୍ଦ୍ଦେଶବିପର୍ଯ୍ୟୟଃ ।।୩୬।।

କ୍ରିୟା କରିବାରେ ଜୀବାତ୍ମାକୁ କର୍ତ୍ତାପଣ ଲାଭ କରିବାର କଥନ ଶ୍ରୁତିରେ ରହିଛି, ଏଣୁ ମଧ ଜୀବାତ୍ମା କର୍ତ୍ତା ଅଟେ । ଯଦି ଜୀବାତ୍ମାକୁ କର୍ତ୍ତା କହିବା ଅଭୀଷ୍ଟ ହେଉନାହିଁ ତେବେ ଶ୍ରୁତିର ସଙ୍କେତ ତାହାର ବିପରୀତ ଅଟେ ।୩୬।

» ଉପଲବ୍ଧିବଦନିୟମଃ ।।୩୭।।

ସୁଖଦୁଃଖାଦି ଭୋଗମାନଙ୍କର ପ୍ରାପ୍ତି ଭଳି କର୍ମ କରିବାରେ ମଧ ନିୟମ ନାହିଁ ।।୩୭।।

» ଶକ୍ତିବିପର୍ଯ୍ୟୟାତ୍ ।।୩୮।।

ଶକ୍ତିର ବିପର୍ଯ୍ୟୟ ହେବା କାରଣରୁ ମଧ (ବିବେକର ଆଦର କରିବା ବ୍ୟତୀତ ତାହାଦ୍ୱାରା ସର୍ବାଦୌ ହିତାଚରଣ ହେବାର ନିୟମ ହୋଇ ନ ପାରେ ।) ।।୩୮।।

» ସମାଧଭାବାଚ୍ଚ ।।୩୯।।

ସମାଧି ଅବସ୍ଥାର ଅଭାବ ପ୍ରାପ୍ତ ହେବାଦ୍ୱାରା ମଧ ଜୀବାତ୍ମାର କର୍ତ୍ତାପଣ ସ୍ୱଭାବିକ ମାନିବା ଅନୁଚିତ ।।୩୯।।

- **ତକ୍ଷାଧିକରଣମ୍ । ସୂ. ୪୦**

» **ଯଥା ଚ ତକ୍ଷୋଭୟଥା ।।୪୦।।**

ଏହା ବ୍ୟତୀତ ଯେଉଁଭଳି କାରିଗର କେବେ କର୍ମ କରିଥାଏ, କେବେ କରେନାହିଁ-- ଅର୍ଥାତ୍ ଉଭୟ ପ୍ରକାରର ସ୍ଥିତି ଦେଖାଦେଇଥାଏ । (ସେହିଭଳି ଜୀବାତ୍ମା ମଧ ଉଭୟ ପ୍ରକାର ସ୍ଥିତିରେ ରହିଥାଏ, ଏଣୁ ଏହାର କର୍ତ୍ତାପଣ ସ୍ୱରୂପଗତ ନୁହେଁ ।)।।୪୦।।

- **ପରାୟତ୍ତାଧିକରଣମ୍ । ସୂ. ୪୧-୪୨**

» **ପରାତ୍ତୁ ତଚ୍ଛ୍ରୁତେଃ ।।୪୧।।**

ସେହି ପରମାତ୍ମାଙ୍କର କର୍ତ୍ତାପଣ ପରମେଶ୍ୱରଙ୍କ ଠାରେ ହିଁ ରହିଛି କାହିଁକି ନାଁ ଶ୍ରୁତିବର୍ଣ୍ଣନାରୁ ଏହା ସିଦ୍ଧ ହେଉଛି ।।୪୧।।

» **କୃତପ୍ରଯତ୍ନାପେକ୍ଷସ୍ତୁ ବିହିତପ୍ରତିଶିଦ୍ଧାବୈୟର୍ଥ୍ୟାଦିଭ୍ୟଃ ।।୪୨।।**

କିନ୍ତୁ ଈଶ୍ୱର ଜୀବର ପୂର୍ବକୃତକର୍ମ ସଂସ୍କାରମାନଙ୍କର ଅପେକ୍ଷାରଖି ତାକୁ ନବୀନ କର୍ମ କରିବାର ଶକ୍ତି ଓ ସାମଗ୍ରୀ ପ୍ରଦାନ କରୁଛନ୍ତି, ସେଇଥିପାଇଁ ତଥା ବିଧିନିଷେଧ ଶାସ୍ତ୍ରର ସାର୍ଥକତା ଆଦି କାରଣମାନଙ୍କ ପାଇଁ ମଧ ଈଶ୍ୱର ସର୍ବଦା ନିର୍ଦ୍ଦୋଷ ଅଟନ୍ତି ।।୪୨।।

- **ଅଂଶାଧିକରଣମ୍ । ସୂ. ୪୩-୫୩**

» **ଅଂଶୋ ନାନାବ୍ୟପଦେଶାଦନ୍ୟଥା ଚାପି ଦାଶକିତବାଦିତ୍ୱମଧୀୟତ ଏକେ ।।୪୩।।**

ଶ୍ରୁତିରେ ଜୀବମାନଙ୍କୁ ଅନେକ ଏବଂ ଭିନ୍ନ ଭିନ୍ନ ଭାବରେ ବତାଯାଇଛି । ଅନ୍ୟପ୍ରକାରେ କହିଲେ-- ମଧ ଜୀବ ଈଶ୍ୱରଙ୍କର ଅଂଶ ଅଟେ କାହିଁକି ନାଁ ଏକ ଶାଖାଯୁକ୍ତ ବ୍ରହ୍ମଙ୍କୁ ଦାଶକିତବ ଆଦି ରୂପ କହି ଅଧୟନ କରାଯାଇଥାଏ ବୋଲି ମଧ ଏହା ସିଦ୍ଧ ହେଉଛି ।।୪୩।।

» **ମନ୍ତ୍ରବର୍ଣାଚ୍ଚ ।।୪୪।।**

ମନ୍ତ୍ରର ଶବ୍ଦମାନଙ୍କରୁ ଏହିକଥା ମଧ ସିଦ୍ଧ ହେଉଛି ।।୪୪।।

» ଆପ ଚ ସ୍ମର୍ଯ୍ୟତେ ।।୪୫।।

ଏହା ବ୍ୟତୀତ ଅନ୍ୟ ଗ୍ରନ୍ଥରେ ଏହାକୁ ସ୍ମରଣ ମଧ କରାଇ ଦିଆଯାଇଛି ।୪୫।।

» ପ୍ରକାଶାଦିବନ୍ନୈବଂ ପରଃ ।।୪୬।।

ପରମେଶ୍ୱର ଏହିଭଳି ଜୀବାତ୍ମାଙ୍କର ଦୋଷ ଦ୍ୱାରା ସମ୍ବନ୍ଧ ରଖିପାରି ନ ଥାନ୍ତି, ଯେଉଁଭଳି କି ପ୍ରକାଶ ଆଦି ନିଜର ଅଂଶ ଦୋଷରେ ଲିପ୍ତ ହୁଅନ୍ତିନାହିଁ ।।୪୬।।

» ସ୍ମରନ୍ତି ଚ ।।୪୭।।

ଏହିକଥା ସ୍ମୃତିକାର କହନ୍ତି ଏବଂ ଶ୍ରୁତିରେ ମଧ କୁହାଯାଇଛି ।।୪୭।।

» ଅନୁଜ୍ଞାପରିହାରୌ ଦେହସମ୍ବନ୍ଧାଜ୍ଜ୍ୟୋତିରାଦିବତ୍ ।।୪୮।।

ବିଧି ଏବଂ ନିଷିଦ୍ଧ ଜ୍ୟୋତି ଆଦି ଭଳି ଶରୀରର ସମ୍ବନ୍ଧରେ ହୋଇଥାଏ ।।୪୮।।

» ଅସନ୍ତତେଶ୍ଚାବ୍ୟତିକରଃ ।।୪୯।।

ଏହା ବ୍ୟତୀତ (ଶରୀର ଆବରଣଠାରୁ) ବ୍ୟାପକତାର ନିରୋଧ ହେବା କାରଣରୁ ତାଙ୍କର ତଥା ତାଙ୍କ କର୍ମମାନଙ୍କର ମିଶ୍ରଣ ହେବନାହିଁ ।।୪୯।।

» ଆଭାସ ଏବ ଚ ।।୫୦।।

ଏହା ବ୍ୟତୀତ ଅନ୍ୟ ପ୍ରକାରର ମାନ୍ୟତାକୁ ସମର୍ଥନ ଦିଆଯାଉଥିବା ଯୁକ୍ତି ପ୍ରମାଣ ଆଭାସ ମାତ୍ରହିଁ ଅଟେ ।।୫୦।।

» ଅଦୃଷ୍ଟାନିୟମାତ୍ ।।୫୧।।

ଅର୍ଥାତ୍ ଜନ୍ମାନ୍ତରରେ କରାଯାଇଥିବା କର୍ମଫଳ ଭୋଗର କୌଣସି ନିୟତ ବ୍ୟବସ୍ଥା ହୋଇ ନ ପାରେ । ଏଣୁ ଉପାଧି ନିମିତ୍ତ ଜୀବଙ୍କୁ ପରମାତ୍ମାଙ୍କର ଅଂଶ ମନେକରିବା ଯୁକ୍ତିସଙ୍ଗତ ନୁହେଁ ।୫୧।।

» ଅଭିସନ୍ଧ୍ୟାଦିଷ୍ୱପି ଚୈବମ୍ ।।୫୨।।

ଏହା ବ୍ୟତୀତ ଏହିଭଳି ସଙ୍କଳ୍ପ ଆଦିରେ ମଧ (ଅବ୍ୟବସ୍ଥା ହେବ) ।।୫୨।।

» ପ୍ରଦେଶାଦିତି ଚେନ୍ନାନ୍ତର୍ଭାବାତ୍ ।।୫୩।।

ଯଦି କୁହକି, ଉପାଧିମାନଙ୍କରେ ଦେଶଭେଦ ହେବା କାରଣରୁ ସବୁକିଛି ବ୍ୟବସ୍ଥା ହୋଇଯିବ, ତେବେ ଏହା ହୋଇ ନ ପାରେ କାହିଁକି ନାଁ ସମସ୍ତ ଦେଶମାନଙ୍କର ଉପାଧିରେ ଏବଂ ଉପାଧିମାନଙ୍କର ସମସ୍ତ ଦେଶରେ ଅନ୍ତର୍ଭାବ ରହିଛି ।।୫୩।।

ଇତି ମହର୍ଷିବ୍ୟାସବିରଚିତେ ବ୍ରହ୍ମସୂତ୍ରେ
ଦ୍ୱିତୀୟାଧ୍ୟାୟସ୍ୟ ତୃତୀୟଃ ପାଦଃ ।।୩।।

# ଚତୁର୍ଥ ପାଦ

*ଏହା ପୂର୍ବରୁ ତୃତୀୟ ପାଦରେ ପାଞ୍ଚ ଭୂତ ତଥା ଅନ୍ତଃକରଣର ଉତ୍ପତ୍ତି ପ୍ରତିପାଦନ କରାଗଲା ଆଉ ଗୌଣ ରୂପରେ ଜୀବାତ୍ମାର ଉତ୍ପତ୍ତି ମଧ୍ୟ ବତାଗଲା । ଏହା ସହିତ ପ୍ରସଙ୍ଗ ବଶତଃ ଜୀବାତ୍ମାର ସ୍ୱରୂପ ମଧ୍ୟ ବିବେଚନ କରାଗଲା କିନ୍ତୁ ସେଠାରେ ଇନ୍ଦ୍ରିୟମାନଙ୍କର ଏବଂ ପ୍ରାଣର ଉତ୍ପତ୍ତି ପ୍ରତିପାଦନ କରାଗଲା ନାହିଁ । ଏଣୁ ତାହାର ଉତ୍ପତ୍ତି ବିଚାରପୂର୍ବକ ପ୍ରତିପାଦନ କରିବା ପାଇଁ ଏବଂ ତଦ୍ ବିଷୟ ଶ୍ରୁତିରେ ପ୍ରତୀତ ହେଉଥିବା ବିରୋଧ ନିରାକରଣ କରିବାପାଇଁ ଚତୁର୍ଥ ପାଦ ଆରମ୍ଭ କରାଯାଉଛି ।*

- ପ୍ରାଣୋତ୍ପତ୍ତ୍ୟଧିକରଣମ୍ । ସୂ. ୧-୪

» ତଥା ପ୍ରାଣାଃ ।।୧।।

ସେହିଭଳି ପ୍ରାଣ ଶବ୍ଦବାଚ୍ୟ ଇନ୍ଦ୍ରିୟଗଣ ମଧ୍ୟ ପରମେଶ୍ୱରଙ୍କ ଠାରୁ ଉତ୍ପନ୍ନ ହୋଇଥାନ୍ତି ।୧।

» ଗୌଣ୍ୟସମ୍ଭବାତ୍ ।।୨।।

ସମ୍ଭବ ନ ହେବା କାରଣରୁ ଉକ୍ତ ଶ୍ରୁତି ଗୌଣୀ ଅଟେ ଅର୍ଥାତ୍ ତାହାର କଥନ ଗୌଣ ରୂପରେ ହୋଇଥାଏ ।।୨।।

» ତତ୍ପ୍ରାକ୍ ଶ୍ରୁତେଶ୍ଚ ।।୩।।

ଶ୍ରୁତି ଦ୍ୱାରା ସେହି ଆକାଶାଦି ତତ୍ତ୍ୱମାନଙ୍କ ପ୍ରାରମ୍ଭରୁ ଇନ୍ଦ୍ରିୟମାନଙ୍କର ଉତ୍ପତ୍ତି କୁହାଯାଇଛି, (ଏଣୁ ମଧ୍ୟ ତେଜ ଆଦି ଠାରୁ ତାଙ୍କର ଉତ୍ପତ୍ତି ସୂଚୀତ କରୁଥିବା ଶ୍ରୁତି ଗୌଣ ଅଟେ) ।।୩।।

» ତତ୍ପୂର୍ବକତ୍ୱାଦ୍ୱାଚଃ ।।୪।।

ବାଣୀର ଉତ୍ପତ୍ତିର ବର୍ଣ୍ଣନା ତତ୍ତ୍ୱତ୍ରୟୀ ମଧରେ ଉକ୍ତ ବ୍ରହ୍ମଙ୍କର ପ୍ରବିଷ୍ଟ ହେବା ପରେ ହୋଇଛି, (ଏଣୁ ତେଜ ଠାରୁ ତାଙ୍କର ଉତ୍ପତ୍ତି ସୂଚୀତ କରୁଥିବା ଶ୍ରୁତି ଗୌଣ ଅଟେ) ।।୪।।

- ସପ୍ତଗତ୍ୟାଧିକରଣମ୍ । ସୂ. ୫-୬

» ସପ୍ତ ଗତେର୍ବିଶେଷିତତ୍ୱାଚ୍ଚ ।।୫।।

ସାତଗୋଟି ଇନ୍ଦ୍ରିୟ ରହିଛନ୍ତି କାହିଁକି ନାଁ ସାତ ହିଁ ଜ୍ଞାତ ଅଟେ ତଥା 'ସପ୍ତପ୍ରାଣା' ବୋଲି କହି ଶ୍ରୁତି 'ସପ୍ତ' ପଦକୁ ପ୍ରାଣର ବିଶେଷଣ ରୂପରେ ପ୍ରୟୋଗ କରିଛି ।।୫।।

» ହସ୍ତାଦୟସ୍ତୁ ସ୍ଥିତେଽତୋ ନୈବମ୍ ।।୬।।

କିନ୍ତୁ ହାତ ଆଦି ଅନ୍ୟ ଇନ୍ଦ୍ରିୟଗଣ ମଧ ରହିଛନ୍ତି । ଏଣୁ ଏହି ସ୍ଥିତିରେ ଏଭଳି ନୁହେଁ : (କହିବା ଦରକାରକି ଇନ୍ଦ୍ରିୟଗଣ ସାତ ହିଁ ଅଟନ୍ତି) ।।୬।।

- ପ୍ରାଣାଣୁତ୍ୱାଧିକରଣମ୍ । ସୂ. ୭

» ଅଣବଶ୍ଚ ।।୭।।

ସୂକ୍ଷ୍ମଭୂତ ଅର୍ଥାତ୍ ତନ୍ମାତ୍ରାଗଣ ମଧ ସେହି ପରମେଶ୍ୱରଙ୍କ ଠାରୁ ଉତ୍ପନ୍ନ ହୋଇଥାନ୍ତି ।।୭।।

- ପ୍ରାଣଶ୍ରୈଷ୍ଠ୍ୟାଧିକରଣମ୍ । ସୂ. ୮

» ଶ୍ରେଷ୍ଠଶ୍ଚ ।।୮।।

ମୁଖ୍ୟପ୍ରାଣ ମଧ (ସେହି ପରମାତ୍ମାଙ୍କଠାରୁ ଉତ୍ପନ୍ନ ହୋଇଛନ୍ତି) ।।୮।।

- ବାୟୁକ୍ରିୟାଽଧିକରଣମ୍ । ସୂ.୯-୧୨

» ନ ବାୟୁକ୍ରିୟେ ପୃଥଗୁପଦେଶାତ୍ ।।୯।।

(ଶ୍ରୁତିରେ ବର୍ଣ୍ଣିତ ମୁଖ୍ୟପ୍ରାଣ ବାୟୁତତ୍ତ୍ୱ) ଏବଂ ତାହାର କ୍ରିୟା ନୁହେଁ କାହିଁକି ନାଁ ସେହି ଦୁଇଟିଠାରୁ ଅଲଗା ହୋଇ ବର୍ଣ୍ଣନା ହୋଇଛନ୍ତି ।।୯।।

» ଚକ୍ଷୁରାଦିବତ୍ତୁ ତତ୍ସହଶିଷ୍ଟ୍ୟାଦିଭ୍ୟଃ ।।୧୦।।

କିନ୍ତୁ (ପ୍ରାଣ ମଧ) ଚକ୍ଷୁ ଆଦି ଇନ୍ଦ୍ରିୟଗଣଙ୍କ ଭଳି ଜୀବାତ୍ମାଙ୍କର ଉପକରଣ

ଅଟେ । କାହିଁକି ନାଁ ତାହା ସହିତ ପ୍ରାଣ ଏବଂ ଇନ୍ଦ୍ରିୟଗଣଙ୍କ ସମ୍ବାଦରେ ଏହାର ବର୍ଣ୍ଣନ କରାଯାଇଛି । ତଥା ତାଙ୍କଭଳି ଏହା ଜଡ଼ ମଧ ଅଟେ ।।୧୦।।

» ଅକରଣତ୍ୱାଚ୍ଚ ନ ଦୋଷସ୍ତଥା ହି ଦର୍ଶୟତି ।।୧୧।।

ନିଶ୍ଚିତଭାବରେ ଇନ୍ଦ୍ରିୟମାନଙ୍କ ଭଳି ବିଷୟମାନଙ୍କର ଉପଭୋଗରେ କରଣ ନ ହୋଇଥିବା କାରଣରୁ ଉକ୍ତ ଦୋଷ ହୁଏ ନାହିଁ କାହିଁକି ନାଁ ଏହାର କରଣ ହେବା କିଭଳି ଅଟେ ଏହିକଥା ଶ୍ରୁତି ନିଜେ ଦେଖାଇଛନ୍ତି ।।୧୧।।

» ପଞ୍ଚବୃତ୍ତିର୍ମନୋବଦ୍ ବ୍ୟପଦିଶ୍ୟତେ ।।୧୨।।

ଶ୍ରୁତି ଦ୍ୱାରା ଏହା ମନ ଭଳି ପାଞ୍ଚବୃତ୍ତିଯୁକ୍ତ ବୋଲି ବତାଯାଇଛି ।।୧୨।।

• ଶ୍ରେଷ୍ଠାଣୁତ୍ୱାଧିକରଣମ୍ । ସୂ. ୧୩

» ଅଣୁଶ୍ଚ ।।୧୩।।

ଏହା ସୂକ୍ଷ୍ମ ମଧ ଅଟେ ।।୧୩।।

• ଜ୍ୟୋତିରାଦ୍ୟଧିକରଣମ୍ । ସୂ. ୧୪-୧୬

» ଜ୍ୟୋତିରାଦ୍ୟଧିଷ୍ଠାନଂ ତୁ ତଦାମନନାତ୍ ।।୧୪।।

ଜ୍ୟୋତି ଆଦି ତତ୍ତ୍ୱ ଯାହାର ଅଧିଷ୍ଠାନ ବତାଇଅଛନ୍ତି, ତାହା ତ ବ୍ରହ୍ମ ହିଁ ଅଟେ: କାହିଁକି ନାଁ ଅନ୍ୟସ୍ଥାନରେ ମଧ ଶ୍ରୁତି ଦ୍ୱାରା ତାହାକୁ ଅଧିଷ୍ଠାତା ବତାଯାଇଛି ।।୧୪।।

» ପ୍ରାଣବତା ଶବ୍ଦାତ୍ ।।୧୫।।

ବ୍ରହ୍ମ ପ୍ରାଣଧାରୀ ଜୀବାତ୍ମାଙ୍କ ସହିତ ପ୍ରବେଶକରେ, ଏହିଭଳି ଶ୍ରୁତିର କଥନ ହୋଇଥିବାରୁ ଏହା ଦୋଷ ନୁହେଁ ।।୧୫।।

» ତସ୍ୟ ଚ ନିତ୍ୟତ୍ୱାତ୍ ।।୧୬।।

ସେହି ଜୀବାତ୍ମାଙ୍କର ନିତ୍ୟତା ପ୍ରସିଦ୍ଧ ହୋଇଥିବା କାରଣରୁ ମଧ (ତାଙ୍କର ବର୍ଣ୍ଣନା କରିବା ଉଚିତ ଅଟେ) ।।୧୬।।

• ଇନ୍ଦ୍ରିୟାଽଧିକରଣମ୍ । ସୂ. ୧୭-୧୯

» ତ ଇନ୍ଦ୍ରିୟାଣି ତଦ୍ବ୍ୟପଦେଶାଦନ୍ୟତ୍ର ଶ୍ରେଷ୍ଠାତ୍ ।।୧୭।।

ସେହି ମନ ଆଦି ଏଗାର ଇନ୍ଦ୍ରିୟ ମୁଖ୍ୟପ୍ରାଣଠାରୁ ଭିନ୍ନ ଅଟନ୍ତି, କାହିଁକି ନାଁ ଅନ୍ୟ ଶ୍ରୁତି ମାନଙ୍କରେ ତାହାର ଭିନ୍ନତା ବର୍ଣ୍ଣିତ ହୋଇଛି ।।୧୭।।

» **ଭେଦଶ୍ରୁତେଃ ।।୧୮।।**

ଇନ୍ଦ୍ରିୟମାନଙ୍କ ମଧ୍ୟରେ ମୁଖ୍ୟ ପ୍ରାଣର ଭେଦ ଶୁଣାଯାଇଛି, ଏଣୁ ମଧ୍ୟ ମୁଖ୍ୟପ୍ରାଣ ତାହାଠାରୁ ଭିନ୍ନ ତତ୍ତ୍ୱ ସିଦ୍ଧ ହେଉଛି ।।୧୮।।

» **ବୈଲକ୍ଷଣ୍ୟାଚ୍ଚ ।।୧୯।।**

ପରସ୍ପର ବିଲକ୍ଷଣତା ହୋଇଥିବା କାରଣରୁ ମଧ୍ୟ (ଏହା ସିଦ୍ଧ ହେଉଛି କି ମୁଖ୍ୟପ୍ରାଣ ଠାରୁ ଇନ୍ଦ୍ରିୟଗଣ ଭିନ୍ନ ପଦାର୍ଥ ଅଟେ) ।।୧୯।।

● **ସଞ୍ଜ୍ଞାମୂର୍ତ୍ତିକ୍ଳୃପ୍ତ୍ୟଧିକରଣମ୍ । ସୂ. ୨୦-୨୨**

» **ସଂଜ୍ଞାମୂର୍ତ୍ତିକ୍ଳୃପ୍ତିସ୍ତୁ ତ୍ରିବୃତ୍କୁର୍ବତ ଉପଦେଶାତ୍ ।।୨୦।।**

ନାମରୂପର ରଚନା ମଧ୍ୟ ତିନି ତତ୍ତ୍ୱର ମିଶ୍ରଣକାରୀ ପରମେଶ୍ୱରଙ୍କର ହିଁ କର୍ମ ଅଟେ: କାହିଁକି ନାଁ ସେଠାରେ ଶ୍ରୁତିବର୍ଣ୍ଣନାରୁ ଏହି କଥା ସିଦ୍ଧ ହେଉଛି ।।୨୦।।

» **ମାଂସାଦି ଭୌମଂ ଯଥାଶବ୍ଦମିତରୟୋଶ୍ଚ ।।୨୧।।**

(ଯେଉଁଭଳି) ମାଂସ ଆଦି ପୃଥିବୀର କାର୍ଯ୍ୟ ବୋଲି ନିର୍ଦ୍ଦେଶିତ ହୋଇଛନ୍ତି, (ସେହିଭଳି) ସେଠାରେ ଶ୍ରୁତିର ଶବ୍ଦ ବର୍ଣ୍ଣନାନୁସାରେ ଦ୍ୱିତୀୟ ଉଭୟତତ୍ତ୍ୱର କାର୍ଯ୍ୟ ବୋଲି ବୁଝିନେବା ଦରକାର ।।୨୧।।

» **ବୈଶେଷ୍ୟାତ୍ତୁ ତଦ୍ୱାଦସ୍ତଦ୍ୱାଦଃ ।।୨୨।।**

ଉକ୍ତ କଥନ, ଉକ୍ତ କଥନ ତ ଅଧିକତା କାରଣରୁ ହୋଇଥାଏ ।।୨୨।।

ଇତି ମହର୍ଷିବ୍ୟାସବିରଚିତେ ବ୍ରହ୍ମସୂତ୍ରେ
ଦ୍ୱିତୀୟାଧାୟସ୍ୟ ଚତୁର୍ଥଃ ପାଦଃ ।।୪।।

ଦ୍ୱିତୀୟୋଽଧାୟଃ ସମାପ୍ତଃ ।

# ତୃତୀୟ ଅଧ୍ୟାୟ

## ପ୍ରଥମ ପାଦ

*ପୂର୍ବ ଦୁଇ ଅଧ୍ୟାୟରେ ବ୍ରହ୍ମ ଏବଂ ଜୀବାତ୍ମାଙ୍କର ସ୍ୱରୂପ ପ୍ରତିପାଦନ କରାଗଲା । ଏବେ ସେହି ପରବ୍ରହ୍ମ ପରମେଶ୍ୱରଙ୍କ ପ୍ରାପ୍ତିର ଉପାୟ ନିର୍ଦ୍ଦେଶ କରିବାପାଇଁ ତୃତୀୟ ଅଧ୍ୟାୟର ଆରମ୍ଭ କରାଯାଉଛି । ଏଣୁ ଏହି ଅଧ୍ୟାୟକୁ ସାଧନାଧ୍ୟାୟ ଅଥବା ଉପାସନାଧ୍ୟାୟ ବୋଲି କୁହାଯାଏ । ପରମାତ୍ମାଙ୍କର ପ୍ରାପ୍ତି ସାଧନରେ ସର୍ବପ୍ରଥମେ ବୈରାଗ୍ୟର ଆବଶ୍ୟକତା ରହିଛି । ସଂସାରର ଅନିତ୍ୟ ଭୋଗରେ ବୈରାଗ୍ୟ ହେବାଦ୍ୱାରା ମନୁଷ୍ୟଠାରେ ପରମାତ୍ମାଙ୍କୁ ପ୍ରାପ୍ତ କରିବାର ଶୁଭେଚ୍ଛା ପ୍ରକଟିତ ହେଉଛି ଆଉ ତାହା ତାଙ୍କ ପାଇଁ ପ୍ରଯତ୍ନଶୀଳ ହୋଇଥାଏ ଅତଃ ବୈରାଗ୍ୟ ଉତ୍ପାଦନ ପାଇଁ ବାରମ୍ବାର ଜନ୍ମମୃତ୍ୟୁ ଏବଂ ଗର୍ଭାଦିର ଦୁଃଖ ପ୍ରଦର୍ଶନ କରିବା ପାଇଁ ଏହି ପ୍ରଥମପାଦର ପ୍ରାରମ୍ଭ କରାଯାଉଛି ।*

*ପ୍ରଳୟ ପରେ ସୃଷ୍ଟି କାଳରେ ସେହି ପରବ୍ରହ୍ମ ପରମେଶ୍ୱରଙ୍କ ଠାରେ ଯେଉଁଭଳି ଏହି ଜଗତର ଉତ୍ପତ୍ତି ହେଉଛି ତାହାର ବର୍ଣ୍ଣନା ପୂର୍ବରୁ କରି ସାରିଛନ୍ତି । ଅଧୁନା ଜଗତରେ ଜୀବାତ୍ମାର ଯେଉଁ ଶରୀର ପରିବର୍ତ୍ତନ ହେଉଛି, ସେହି ବିଷୟରେ ଶ୍ରୁତିମାନଙ୍କରେ ଯେଉଁଭଳି ବର୍ଣ୍ଣନା କରାଯାଇଛି, ତାହାରି ଆଧାରରେ ଏହି ତୃତୀୟ ଅଧ୍ୟାୟର ପ୍ରଥମପାଦର ବିଚାର କରାଯାଇପାରେ । ବିଚାର୍ଯ୍ୟ ବିଷୟ ହେଉଛି ଯେତେବେଳେ ଏହି ଜୀବାତ୍ମା ପ୍ରଥମ ଶରୀର ତ୍ୟାଗକରି ଦ୍ୱିତୀୟ ଶରୀରକୁ ଧାରଣ କରେ, ସେତେବେଳେ ଏକାକୀ ଗମନ କରିଥାଏ ଅଥବା ଆଉ କେହି ତା' ସହିତ ଗମନ କରିଥାନ୍ତି । ତାହା ନିର୍ଣ୍ଣୟ କରିବାପାଇଁ ଏହି ଅଧ୍ୟାୟର ପ୍ରତିପାଦନ--*

- **ତଦନ୍ତରପ୍ରତିପତ୍ତ୍ୟଧିକରଣମ୍ । ସୂ. ୧-୭ ।**

» **ତଦନନ୍ତରପ୍ରତିପତ୍ତୌ ରଂହତି ସମ୍ପରିଷ୍ୱକ୍ତଃ ପ୍ରଶ୍ନନିରୂପଣାଭ୍ୟାମ୍ ।।୧**

ଉକ୍ତ ଦେହ ପରେ ଦେହାନ୍ତର ପ୍ରାପ୍ତି ସମୟରେ (ଏହି ଜୀବାତ୍ମା) ଶରୀରରେ ବୀଜରୂପକ ସୂକ୍ଷ୍ମତତ୍ତ୍ୱରେ ଯୁକ୍ତ ହୋଇଯାଏ, ଏହିକଥା ପ୍ରଶ୍ନ ଏବଂ ତାହାର ଉତ୍ତର ଦ୍ୱାରା ସିଦ୍ଧ ହେଉଛି ।।୧

» **ତ୍ର୍ୟାତ୍ମକତ୍ୱାତ୍ତୁ ଭୂୟସ୍ତ୍ୱାତ୍ ।।୨**

ଶରୀର ତିନିତତ୍ତ୍ୱର ସମ୍ମିଶ୍ରଣ ଅଟେ, ଏଣୁ (ଜଳର କହିବାନୁସାରେ ସମସ୍ତଙ୍କର ଗ୍ରହଣ ହୋଇଯାଏ): ତଥା ବୀର୍ଯ୍ୟରେ ସବୁଠାରୁ ଅଧିକ ଜଳର ଭାଗ ରହେ । ଏଣୁ (ଜଳ ନାମରେ ତାହାର ବର୍ଣ୍ଣନା କରାଯାଇଛି) ।।୨

» **ପ୍ରାଣଗତେଶ୍ଚ ।।୩**

ଜୀବାତ୍ମା ସହିତ ପ୍ରାଣଗମନର ବର୍ଣ୍ଣନ ହେବାରୁ ମଧ(ଏହି କଥା ସିଦ୍ଧ ହେଉଛି) ।।୩

» **ଅଗ୍ନ୍ୟାଦିଗତିଶ୍ରୁତେରିତି ଚେନ୍ନ ଭାକ୍ତତ୍ୱାତ୍ ।।୪**

ଯଦି କୁହକି ଅଗ୍ନି ଆଦିରେ ପ୍ରବେଶ କରିବାକଥା ଦ୍ୱିତୀୟ ଶ୍ରୁତିରେ କୁହାଯାଇଛି, ଏଣୁ ଏହା ସିଦ୍ଧ ହେଉନାହିଁ: ତେବେ ଏହା ଠିକ୍ ନୁହେଁ କାହିଁକି ନାଁ ସେହି ଶ୍ରୁତି ଅନ୍ୟ ବିଷୟକ ହୋଇଥିବାରୁ ଗୌଣ ଅଟେ ।।୪

» **ପ୍ରଥମେଽଶ୍ରବଣାଦିତି ଚେନ୍ନ ତା ଏବ ହ୍ୟୁପପତ୍ତେଃ ।।୫।।**

ଯଦି କୁହାଯାଏ କି, ପ୍ରଥମ ଆହୁତିର ବର୍ଣ୍ଣନାରେ ଜଳର ନାମ ଶୁଣାଯାଇନାହିଁ, ତେଣୁ (ଶେଷରେ ଏହା କହିବା କି ପଞ୍ଚମ ଆହୁତିରେ ଜଳ ପୁରୁଷ ନାମଧାରୀ ହୋଇଯାଇଛି ତେବେ ବିରୁଦ୍ଧ ହେବ) । ତାହେଲେ ଏଭଳି କଥା ନୁହେଁ କାହିଁ କି ନାଁ ପୂର୍ବାପର ସଙ୍ଗତିରେ ଏହା ସିଦ୍ଧ ହେଉଛି କି ସେଠାରେ ଶ୍ରଦ୍ଧା ନାମରେ ସେହି ଜଳର ହିଁ କଥନ ହୋଇଛି ।।୫

» **ଅଶ୍ରୁତତ୍ୱାଦିତି ଚେନ୍ନେଷ୍ଟାଦିକାରିଣାଂ ପ୍ରତୀତେଃ ।।୬।।**

ଯଦି ଏଭଳି କୁହାଯାଏ କି, ଶ୍ରୁତିରେ ତତ୍ତ୍ୱ ସହିତ ଜୀବାତ୍ମାଙ୍କର ଗମନର ବର୍ଣ୍ଣନା ହୋଇନାହିଁ ସେଥିପାଇଁ (ତାଙ୍କ ସହିତ ଜୀବାତ୍ମା ଯାଏ ଏଭଳି କହିବା ଯୁକ୍ତି

ସଙ୍ଗତ ହେବନାହିଁ): ତାହେଲେ ଏଭଳି କହିବା ଠିକ୍ ନୁହେଁ । କାହିଁକି ନାଁ ସେହି ପ୍ରସଙ୍ଗରେ ଭଲ-ମନ୍ଦ କର୍ମକର୍ତ୍ତାଙ୍କର ବର୍ଣ୍ଣନା ହୋଇଛି । ଅତଃ ଏହି ଶ୍ରୁତିରେ ସେହି ଶୁଭାଶୁଭକାରୀ ଜୀବାତ୍ମାଙ୍କର ବର୍ଣ୍ଣନାର ପ୍ରତୀତି ସ୍ପଷ୍ଟ ଅଟେ । ଏଣୁ (ଉକ୍ତ ବିରୋଧ ଏଠାରେ ନାହିଁ) ।।୬

» ଭାକ୍ତଂ ବାନାତ୍ମବିତ୍ତ୍ୱାତଥା ହି ଦର୍ଶୟତି ।।୭।।

ସେହି ଲୋକ ଆତ୍ମଜ୍ଞାନୀ ନୁହଁନ୍ତି, ଏହି କାରଣରୁ ଆତ୍ମଜ୍ଞାନୀଙ୍କର ଅପେକ୍ଷା ତାଙ୍କର ହୀନତା ଦେଖାଇବା ପାଇଁ ତାଙ୍କୁ ଦେବତାମାନଙ୍କର ଅନ୍ନ ବତାଉଥିବା ଶ୍ରୁତି ଗୌଣ ଅଟେ କାହିଁକି ନାଁ ସେହି ପ୍ରକାରେ ତାଙ୍କର ହୀନତ୍ୱ ଏବଂ ସ୍ୱର୍ଗଲୋକରେ ନାନା ପ୍ରକାରର ଭୋଗ ଭୋଗିବାକଥା ମଧ ଶ୍ରୁତିରେ ଦେଖାଯାଇଛି ।।୭

• କୃତାତ୍ୟୟାଧିକରଣମ୍ । ସୂ. ୮-୧୧

» କୃତାତ୍ୟୟେଽନୁଶୟବାନ୍‌ଦୃଷ୍ଟସ୍ମୃତିଭ୍ୟାଂ ଯଥେତମନେବଂ ଚ ।।୮

କୃତ ପୁଣ୍ୟକର୍ମର କ୍ଷୟ ହେବାପରେ କର୍ମ ସଂସ୍କାର ସାହାଯ୍ୟରେ ଯୁକ୍ତ ଅବଶିଷ୍ଟାଂଶ ଯେଉଁଭଳି ଗମନ କରିଥାଏ, ସେହି ମାର୍ଗରେ ଅଥବା ତଦ୍‌ଭିନ୍ନ ଅନ୍ୟ କୌଣସି ଦ୍ୱିତୀୟ ପ୍ରକାରେ ଲେଉଟି ଆସିଥାଏ । ଶ୍ରୁତି ଏବଂ ସ୍ମୃତିରେ ଏହିକଥା ସିଦ୍ଧ ହୋଇଛି ।।୮

» ଚରଣାଦିତି ଚେନ୍ନୋପଲକ୍ଷଣାର୍ଥେତି କାର୍ଷ୍ଣାଜିନିଃ ।।୯।।

ଯଦି ଏଭଳି କୁହକି, ଚରଣ ଶବ୍ଦର ପ୍ରୟୋଗ ହୋଇଛି, ଏଣୁ ଏଭଳି କଥା ନୁହେଁ କାରଣ ଉକ୍ତ କଥନ ଅନୁଶୟ (ଶେଷ କର୍ମ ସଂସ୍କାରମାନଙ୍କର) ଉପଲକ୍ଷଣ କରିବା ପାଇଁ ହୋଇଛି । ତେବେ ଏହିକଥା କାର୍ଷ୍ଣାଜିନି ନାମକ ଆଚାର୍ଯ୍ୟଙ୍କର ମତ ଅଟେ, ଏଣୁ କୌଣସି ବିରୋଧ ନାହିଁ ।।୯

» ଆନର୍ଥକ୍ୟମିତି ଚେନ୍ନ ତଦପେକ୍ଷତ୍ୱାତ୍ ।।୧୦।।

ଯଦି କୁହ କୌଣସି କାରଣ ବ୍ୟତୀତ ଉପଲକ୍ଷଣ ରୂପରେ ଚରଣ ଶବ୍ଦର ପ୍ରୟୋଗ କରିବା ନିରର୍ଥକ ଅଟେ, ତେବେ ତାହା କହିବା ଠିକ୍ ନୁହେଁ । କାହିଁକି ନାଁ କର୍ମାଶୟରେ ଆଚରଣ ଆବଶ୍ୟକ ।।୧୦

» ସୁକୃତଦୁଷ୍କୃତେ ଏବେତି ତୁ ବାଦାରେଃ ।।୧୧।।

ବାଦରି ଆଚାର୍ଯ୍ୟ ତ ଏଭଳି ମାନୁଛନ୍ତି କି, ଏହି ପ୍ରକରଣରେ ଚରଣ ନାମରେ

ଶୁଭାଶୁଭ କର୍ମ ହିଁ କୁହାଯାଇଛି ।।୧୧

● **ଅନିଷ୍ଟାଦିକାର୍ଯ୍ୟଧିକରଣମ୍ ।। ସୂ ୧୨-୨୧**

» **ଅନିଷ୍ଟାଦିକାରିଣାମପି ଚ ଶ୍ରୁତମ୍ ।।୧୨।।**

କିନ୍ତୁ ଅଶୁଭ ଆଦି କର୍ମକର୍ତ୍ତାଙ୍କର ମଧ୍ୟ ଚନ୍ଦ୍ରଲୋକ ଗମନ କରିବା କଥା ବେଦରେ ଶୁଣିବାକୁ ମିଳେ ।।୧୨

» **ସଂଯମନେ ତ୍ୱନୁଭୂୟେତରେଷାମାରୋହାବରୋହୌ ତଦ୍‌ଗତିଦର୍ଶନାତ୍ ।।୧୩।।**

କିନ୍ତୁ ଇତର ଅର୍ଥାତ୍ ପାପକର୍ମକାରୀଙ୍କୁ ଯମଲୋକରେ ପାପକର୍ମର ଫଳ ଭୋଗ କରିବାପରେ ଉନ୍ନତି ଅବନତି ହୋଇଥାଏ କାହିଁକି ନାଁ ତାଙ୍କର ଗତି ଶ୍ରୁତିରେ ଏହିଭଳି ଦେଖାଯାଏ ।।୧୩

» **ସ୍ମରନ୍ତି ଚ ।।୧୪।।**

ସ୍ମୃତିରେ ମଧ୍ୟ ଏହି କଥାର ସମର୍ଥନ କରାଯାଇଛି ।।୧୪

» **ଅପି ଚ ସପ୍ତ ।।୧୫।।**

ଏହା ବ୍ୟତୀତ ପାପକର୍ମର ଫଳ ଭୋଗିବା ପାଇଁ ପ୍ରଧାନତଃ ସପ୍ତନର୍କର କଥା ବର୍ଣ୍ଣନ ଆସୁଛି ।।୧୫

» **ତତ୍ରାପି ଚ ତଦ୍‌ବ୍ୟାପାରାଦବିରୋଧଃ ।।୧୬।।**

ଏବଂ ସେହି ଯାତନାମାନଙ୍କ ସ୍ଥାନରେ ମଧ୍ୟ ସେହି ଯମରାଜଙ୍କ ଆଜ୍ଞାନୁସାରେ କାର୍ଯ୍ୟ ହେବାରୁ କୌଣସି ପ୍ରକାର ବିରୋଧ ନାହିଁ ।।୧୬

» **ବିଦ୍ୟାକର୍ମଣୋରିତି ତୁ ପ୍ରକୃତତ୍ୱାତ୍ ।।୧୭।।**

ଜ୍ଞାନ ଏବଂ ଶୁଭକର୍ମ-- ଏହା ଦୁଇଟି ପ୍ରକରଣ ହୋଇଥିବା କାରଣରୁ ଏଭଳି କଥନ ଉଚିତ ଅଟେ ।।୧୭

» **ନ ତୃତୀୟେ ତଥୋପଲବ୍ଧେଃ ।।୧୮।।**

ସେଠାରେ କୁହାଯାଇଥିବା ତୃତୀୟ ଗତିରେ (ଯମଲୋକ ଗମନରୂପ ଗତିର) ଅନ୍ତର୍ଭାବ ହୁଏ ନାହିଁ କାହିଁକି ନାଁ ସେହି ବର୍ଣ୍ଣନରେ ଏହିଭଳି କଥା ମିଳିଥାଏ ।।୧୮

» ସ୍ମର୍ଯ୍ୟତେଽପି ଚ ଲୋକେ ।।୧୯।।

ସ୍ମୃତିମାନଙ୍କରେ ଏହାର ସମର୍ଥନ କରାଯାଇଛି ଏବଂ ଲୋକରେ ମଧ୍ୟ ଏହିକଥା ପ୍ରଚଳିତ ଅଟେ ।।୧୯

» ଦର୍ଶନାଚ୍ଚ ।।୨୦।।

ଶ୍ରୁତିରେ ମଧ୍ୟ ଏହିଭଳି ବର୍ଣ୍ଣନ ଦେଖାଯାଇଛି ଏଣୁ ଏହା ମାନିବା ଠିକ୍ ହେବକି ଏହି ପ୍ରକରଣରେ ବତାଯାଇଥିବା ତୃତୀୟଗତିରେ ଯମଯାତନାର ଅନ୍ତର୍ଭାବ ହୁଏ ନାହିଁ ।।୨୦

» ତୃତୀୟଶବ୍ଦାବରୋଧଃ ସଂଶୋକଜସ୍ୟ ।।୨୧।।

ଝାଳରୁ ଉତ୍ପନ୍ନ ଜୀବ ସମୁଦାୟର ତୃତୀୟ ନାମଯୁକ୍ତ ଉଦ୍ଭିଦ ଜାତୀୟ ସଂଗ୍ରହ ବୁଝିବା ଦରକାର ।।୨୧

• ସାଭାବ୍ୟାପତ୍ତ୍ୟଧିକରଣମ୍ । ସୂ. ୨୨

» ତତ୍ସାଭାବ୍ୟାପତ୍ତିରୁପପତ୍ତେଃ ।।୨୨।।

ତାଙ୍କ ସଦୃଶ ଭାବର ପ୍ରାପ୍ତ ହୁଏ କାହିଁକି ନାଁ ଏହିକଥା ଯୁକ୍ତି ଦ୍ୱାରା ସିଦ୍ଧ ହେଉଛି ।।୨୨

• ନାତିଚିରାଧିକରଣମ୍ ।। ସୂ. ୨୩

» ନାତିଚିରେଣ ବିଶେଷାତ୍ ।।୨୩ ।।

ଊର୍ଦ୍ଧ୍ୱଗମନ ଅପେକ୍ଷା ଅଧଃ ଉତରଣ ପରିସ୍ଥିତିରେ ଭେଦ ହୋଇଥିବା କାରଣରୁ ଜୀବ ସେହି ଆକାଶ, ବାୟୁ ଆଦି ରୂପରେ ଅଧିକ କାଳ ପର୍ଯ୍ୟନ୍ତ ନ ରହି କ୍ରମଶଃ ନିମ୍ନକୁ ଓହ୍ଲାଇ ଆସିଥାଏ ।।୨୩

• ଅନ୍ୟାଧିଷ୍ଠିତାଧିକରଣମ୍ । ସୂ.୨୪-୨୭

» ଅନ୍ୟାଧିଷ୍ଠିତେଷୁ ପୂର୍ବବଦଭିଲାପାତ୍ ।।୨୪।।

ପ୍ରଥମ ଭଳି ଏହି କଥନ ଏଇଥିପାଇଁ କୁହାଯାଇଛି କି, ଦ୍ୱିତୀୟ ଜୀବାତ୍ମା ନିଜର କର୍ମଫଳ ଭୋଗିବା ପାଇଁ ଯେଉଁଥିରେ ସ୍ଥିତ ହେଉଛି, ସେହି କ୍ଷେତ୍ରରେ ଧାନ, ଯଅ ଆଦିରେ କେବଳ ସନ୍ନିଧିମାତ୍ର ଦ୍ୱାରା ତାହାର ନିବାସ ହୋଇଥାଏ ।।୨୪

» ଅଶୁଦ୍ଧମିତି ଚେନ୍ନ ଶବ୍ଦାତ୍ ।।୨୫।।

ଯଦି କୁହାଯାଏ କି, ଏହା ତ ଅଶୁଦ୍ଧ ପାପକର୍ମ ହେବ ତେବେ ସେଭଳି କଥା ନୁହେଁ: ଶ୍ରୁତି ବଚନାନୁସାରେ ନିର୍ଦ୍ଦୋଷତା ସିଦ୍ଧ ହେଉଛି ।।୨୫

» ରେତଃସିଗ୍‌ଯୋଗୋଽଥ ।।୨୬।।

ଏହାପରେ ବୀର୍ଯ୍ୟ ସେଚନକାରୀ ପୁରୁଷ ସହିତ ତାହାର ସମ୍ବନ୍ଧ ହୋଇଥାଏ ।।୨୬

» ଯୋନେଃ ଶରୀରମ୍ ।।୨୭।।

ସ୍ତ୍ରୀ ଯୋନିରେ ପ୍ରବିଷ୍ଟ ହେବାପରେ ସେହି ଜୀବାତ୍ମା କର୍ମଫଳ ଭୋଗ ଅନୁରୂପ ଶରୀରକୁ ପ୍ରାପ୍ତ ହୋଇଥାଏ ।।୨୭

ଇତି ମହର୍ଷିବ୍ୟାସବିରଚିତେ ବ୍ରହ୍ମସୂତ୍ରେ
ତୃତୀୟାଧ୍ୟାୟସ୍ୟ ପ୍ରଥମ ପାଦଃ ।।୧।।

# ଦ୍ୱିତୀୟ ପାଦ



*ପ୍ରଥମ ପାଦରେ ଦେହାନ୍ତ ପ୍ରାପ୍ତି ପ୍ରସଙ୍ଗରେ ପଞ୍ଚାଗ୍ନି ବିଦ୍ୟା ପ୍ରକରଣ ଉପରେ ବିଚାରକରି ଜୀବକୁ ବାରମ୍ବାର ପ୍ରାପ୍ତ ହେଉଥିବା ଜନ୍ମ-ମୃତ୍ୟୁରୂପ ଦୁଃଖର ବର୍ଣ୍ଣନା କରାଗଲା । ଏହି ବର୍ଣ୍ଣନାର ଗୂଢ ରହସ୍ୟ ହେଉଛି, ଜୀବର ମନରେ ସାଂସାରିକ ପଦାର୍ଥ ତଥା ନିଜର ନଶ୍ୱର ଶରୀର ପ୍ରତି ଆସକ୍ତି କମ୍ ହେଉ ଆଉ ନିରନ୍ତର ବୈରାଗ୍ୟର ଭାବନା ବଢୁ । ଏବେ ଦ୍ୱିତୀୟ ପାଦରେ ଶରୀରର ଭିନ୍ନ ଭିନ୍ନ ଅବସ୍ଥାମାନଙ୍କ ଉପରେ ବିଚାରକରି ଏହି ଜନ୍ମମରଣ ରୂପ ସଂସାର ବନ୍ଧନରୁ ମୁକ୍ତ ହେବାପାଇଁ ପରମେଶ୍ୱରଙ୍କର ଧ୍ୟାନରୂପ ଉପାୟ ବତାଯାଉଛି । ଅତଏବ ପ୍ରଥମେ ସ୍ୱପ୍ନାବସ୍ଥା ଉପରେ ବିଚାର ଆରମ୍ଭକରି ଦୁଇଗୋଟି ସୂତ୍ର ପରେ ପୂର୍ବ ପକ୍ଷର ଉତ୍ଥାପନ କରାଯାଇଛି ।*

• ସଂଧ୍ୟାଧିକରଣମ୍ । ସୂ. ୧-୬

› ସଂଧ୍ୟେ ସୃଷ୍ଟିରାହ ହି ।।୧।।

ସ୍ୱପ୍ନରେ ମଧ ଜାଗ୍ରତ ଭଳି ସାଂସାରିକ ପଦାର୍ଥମାନଙ୍କର ରଚନା ହୋଇଥାଏ କାହିଁକି ନାଁ ଶ୍ରୁତି ଏହିଭଳି ବର୍ଣ୍ଣନା କରିଛନ୍ତି ।।୧

» ନିର୍ମାତାରଂ ଚୈକେ ପୁତ୍ରାଦୟଶ୍ଚ ।।୨।।

ଏବଂ ଏକ ଶାଖାଯୁକ୍ତ ପୁରୁଷଙ୍କୁ କାମନାମାନଙ୍କର ନିର୍ମାତା ମଧ ମାନନ୍ତି ପୁଣି ତାଙ୍କ ମତରେ ପୁତ୍ର ଆଦିର 'କାମ' ଅଥବା କାମନା ସମ୍ପର୍କିତ ବିଷୟ ଅଟେ ।।୨

» ମାୟାମାତ୍ରଂ ତୁ କାର୍ତ୍ସ୍ନ୍ୟେନାନଭିବ୍ୟକ୍ତସ୍ୱରୂପତ୍ୱାତ୍ ।।୩।।

କିନ୍ତୁ ପୂର୍ଣ୍ଣରୂପରେ ତାଙ୍କ ରୂପର ଅଭିବ୍ୟକ୍ତି ବା ଉପଲବ୍ଧି ନ ହୋଇଥିବା

କାରଣରୁ ତାହା ମାୟାମାତ୍ର ଅଟେ ।।୩

» ସୂଚକଶ୍ଚ ହି ଶ୍ରୁତେରାଚକ୍ଷତେ ଚ ତଦ୍ବିଦଃ ।।୪।।

ସ୍ୱପ୍ନ ଭବିଷ୍ୟତରେ ହେଉଥିବା ଶୁଭାଶୁଭ ପରିଣାମର ସୂଚକ ମଧ ହୋଇଥାଏ କାହିଁକି ନାଁ ଶ୍ରୁତି ଦ୍ୱାରା ଏହା ସିଦ୍ଧ ହେଉଛି ଆଉ ସ୍ୱପ୍ନ ବିଷୟକ ଶାସ୍ତ୍ରକୁ ଜାଣିଥିବା ବ୍ୟକ୍ତି ମଧ ଏହିଭଳି କହୁଛନ୍ତି ।।୪

» ପରାଭିଧାନାତ୍ତୁ ତିରୋହିତଂ ତତୋ ହ୍ୟସ୍ୟ ବନ୍ଧବିପର୍ଯ୍ୟୌ ।।୫।।

ଜୀବାତ୍ମାଙ୍କ ଠାରେ ମଧ ଈଶ୍ୱରସମ ଗୁଣ ରହିଛି କିନ୍ତୁ ଆବୃତ୍ତ ହୋଇ ରହିଛି ଅର୍ଥାତ୍ ଲୁଚି ରହିଛି ଅତଃ ପରବ୍ରହ୍ମ ପରମାତ୍ମାଙ୍କର ନିରନ୍ତର ଧ୍ୟାନ କରିବାଦ୍ୱାରା ସେ ପ୍ରକଟିତ ହୁଅନ୍ତି କାହିଁକି ନାଁ ସେହି ପରମାତ୍ମାଙ୍କ ସକାଶରେ ହିଁ ଏହାର ବନ୍ଧନ ଏବଂ ତଦ୍ ବିପରୀତ ଅର୍ଥାତ୍ ମୋକ୍ଷ ନିହିତ ଅଟେ ।।୫

» ଦେହଯୋଗାଦ୍ୱା ସୋଽପି ।।୬।।

ସେହି ତିରୋଭାବ ମଧ ଶରୀର ସମ୍ବନ୍ଧରେ ହିଁ ହୁଏ ।।୬

- ତଦଭାବାଧିକରଣମ୍ । ସୂ.୭-୮

» ତଦଭାବୋ ନାଡୀଷୁ ତଚ୍ଛ୍ରୁତେରାତ୍ମନି ଚ ।।୭।।

ସୁଷୁପ୍ତି ଅବସ୍ଥାରେ ଉକ୍ତ ସ୍ୱପ୍ନଦୃଶ୍ୟର ଅଭାବ ହୋଇଯାଏ, (ସେହି ସମୟରେ ଜୀବାତ୍ମା) ନାଡ଼ୀ ମଧରେ ସ୍ଥିତ ହୁଏ । କାହିଁକି ନାଁ ଶ୍ରୁତିରେ ସେହିଭଳି କଥନ ରହିଛି ତଥା ଆତ୍ମାରେ ମଧ ତାହାର ସ୍ଥିତି ବତାଯାଇଛି ।।୭

» ଅତଃ ପ୍ରବୋଧୋଽସ୍ମାତ୍ ।।୮।।

ଏଣୁ ଏହିଠାରୁ ଜୀବାତ୍ମାର ଜାଗ୍ରତ ହେବାକଥା ଶ୍ରୁତି ବର୍ଣ୍ଣନା କରିଛି ।।୮

- କର୍ମାନୁସ୍ମୃତିଶବ୍ଦବିଧ୍ୟଧିକରଣମ୍ ।। ସୂ.୯

» ସ ଏବ ତୁ କର୍ମାନୁସ୍ମୃତିଶବ୍ଦବିଧିଭ୍ୟଃ ।।୯।।

ନିଃସନ୍ଦେହରେ ତାହା ଜାଗେ କାହିଁକି ନାଁ କର୍ମ, ଅନୁସ୍ମୃତି, ବେଦପ୍ରମାଣ ଏବଂ କର୍ମ କରିବାର ଆଜ୍ଞା ଇତ୍ୟାଦିର ସିଦ୍ଧି ସେତେବେଳେ ହେବ, ଏଣୁ ଏହା ମାନିନେବା ଠିକ୍ ଅଟେ ।।୯

• ମୁଗ୍ଧେଽର୍ଦ୍ଧସମ୍ପତ୍ତ୍ୟଧିକରଣମ୍ ।। ସୂ. ୧୦

» ମୁଗ୍ଧେଽର୍ଦ୍ଧସମ୍ପତ୍ତିଃ ପରିଶେଷାତ୍ ।।୧୦।।

ମୂର୍ଚ୍ଛାକାଳରେ ଅର୍ଦ୍ଧ ସୁଷୁପ୍ତି ଅବସ୍ଥା ଭୋଗହୁଏ, ଏହା ମାନିନେବା ଉଚିତ କାହିଁକି ନାଁ ଏହି ଅବସ୍ଥା ହିଁ ଅବଶିଷ୍ଟାଂଶ ରହେ ଅନ୍ୟ କୌଣସି ଅବସ୍ଥା ରହେନାହିଁ ।।୧୦

• ଉଭୟଲିଙ୍ଗାଧିକରଣମ୍ ।। ସୂ.୧୧-୨୧।।

» ନ ସ୍ଥାନତୋଽପି ପରସ୍ୟୋଭୟଲିଙ୍ଗଂ ସର୍ବତ୍ର ହି ।।୧୧।।

ସ୍ଥାନ ସମ୍ପର୍କରେ ମଧ ପରବ୍ରହ୍ମ ପରମାତ୍ମାଙ୍କର କୌଣସି ପ୍ରକାର ଦୋଷ କାରଣରୁ ସଂଶର୍ଗ ହୁଏନାହିଁ କାହିଁକି ନାଁ ସମଗ୍ର ବେଦବାକ୍ୟରେ ସେହି ବ୍ରହ୍ମଙ୍କୁ ଉଭୟ ପ୍ରକାରର ଲକ୍ଷଣ ଯୁକ୍ତ ଅର୍ଥାତ୍ ସମସ୍ତ ପ୍ରକାରର ଦୋଷରହିତ ନିର୍ବିଶେଷ ତଥା ସମସ୍ତ ଦିବ୍ୟଗୁଣସମ୍ପନ୍ନ ବତାଯାଇଛି ।।୧୧

» ନ ଭେଦାଦିତି ଚେନ୍ନ ପ୍ରତ୍ୟେକମତଦ୍ୱଚନାତ୍ ।। ୧୨।।

ଯଦି କୁହକି, ସଗୁଣ ଅପରବ୍ରହ୍ମ ଅଥବା କାର୍ଯ୍ୟବ୍ରହ୍ମ ଏବଂ ନିର୍ଗୁଣ ପରବ୍ରହ୍ମ, ବ୍ରହ୍ମଙ୍କର ଦୁଇଟି ପୃଥକ୍ ପୃଥକ୍ ସ୍ୱରୂପ ଅଟନ୍ତି । ଏଣୁ ସେହି ଏକ ପରମାତ୍ମା ଉଭୟ ଲକ୍ଷଣଯୁକ୍ତ ହୋଇ ନ ପାରନ୍ତି ତାହେଲେ ଏଭଳି କଥା ହେବନାହିଁ । କାହିଁକି ନାଁ ପ୍ରତ୍ୟେକ ଶ୍ରୁତିରେ ଏହା ବିପରୀତ ଏକ ପରବ୍ରହ୍ମ ପରମେଶ୍ୱରଙ୍କୁ ହିଁ ଉଭୟପ୍ରକାର ଲକ୍ଷଣଯୁକ୍ତ ବୋଲି ଦର୍ଶାଯାଇଅଛି ।।୧୨

» ଅପି ଚୈବମେକେ ।।୧୩।।

ଏହା ବ୍ୟତୀତ କୌଣସି ଏକ ଶାଖାଯୁକ୍ତ (ବିଶେଷ ରୂପରେ) ଏହିଭଳି ପ୍ରତିପାଦନ କରିଛନ୍ତି ।।୧୩

» ଅରୂପବଦେବ ହି ତତ୍ପ୍ରଧାନତ୍ୱାତ୍ ।।୧୪।।

କାହିଁକି ନାଁ ରୂପରହିତ ନିର୍ବିଶେଷ ଲକ୍ଷଣ ଭଳି ହିଁ ସେହି ସଗୁଣ ସ୍ୱରୂପ ଲକ୍ଷଣର ପ୍ରଧାନତା ରହିଛି, ଏଣୁ ଏହା ସିଦ୍ଧ ହେଉଛି କି, ବ୍ରହ୍ମ ଉଭୟ ଲକ୍ଷଣଯୁକ୍ତ ଅଟେ ।।୧୪

» ପ୍ରକାଶବଚ୍ଚାବୈୟର୍ଥ୍ୟାତ୍ ।।୧୫।।

ତଥା ପ୍ରକାଶ ସଦୃଶ ଉଭୟରେ କୌଣସି ଲକ୍ଷଣ ଅଥବା ତଦ୍ ପ୍ରତିପାଦକ ବେଦବାକ୍ୟ ମଧ ବ୍ୟର୍ଥ ହୁଏ ନାହିଁ । ଏଣୁ ଏହା ସିଦ୍ଧ ହେଉଛି କି ପରମାତ୍ମା ଉଭୟଲକ୍ଷଣ ଯୁକ୍ତ ଅଟନ୍ତି ।।୧୫

» ଆହ ଚ ତନ୍ମାତ୍ରମ୍ ।।୧୬।।

ଶ୍ରୁତି ସେହି ପରମାତ୍ମାଙ୍କୁ କେବଳ ସତ୍ୟ, ଜ୍ଞାନ ଏବଂ ଅନନ୍ତମାତ୍ର ଭାବରେ ବତାଇଛନ୍ତି । ସେଠାରେ ସଗୁଣବାଚକ ଶବ୍ଦ ହିଁ ନାହିଁ ।।୧୬

» ଦର୍ଶୟତି ଚାଥୋ ଅପି ସ୍ମର୍ଯ୍ୟତେ ।।୧୭।।

ଉକ୍ତ କଥନାନନ୍ତର ଶ୍ରୁତି ତାଙ୍କୁ ମଧ ସ୍ୱରୂପଭାବରେ ଦେଖିଥାନ୍ତି । ଏହା ବ୍ୟତୀତ ସ୍ମୃତିରେ ମଧ ତାହାର ସଗୁଣ ସ୍ୱରୂପର ବର୍ଣ୍ଣନା ଆସୁଛି ।।୧୭

» ଅତ ଏବ ଚୋପମା ସୂର୍ଯ୍ୟକାଦିବତ୍ ।।୧୮।।

ଏବଂ ଏଇଥିପାଇଁ ଅର୍ଥାତ୍ ସେହି ପରମେଶ୍ୱରଙ୍କର ଉଭୟରୂପ ସ୍ୱାଭାବିକ ଅଟେ ଏହା ସିଦ୍ଧ କରିବାପାଇଁ ସୂର୍ଯ୍ୟ ଆଦିଙ୍କର ପ୍ରତିବିମ୍ବ ସଦୃଶ ଉପମା ଦିଆଯାଇଛି ।।୧୮

» ଅମ୍ବୁବଦଗ୍ରହଣାତ୍ତୁ ନ ତଥାତ୍ୱମ୍ ।।୧୯।।

କିନ୍ତୁ ଜଳରେ ସ୍ଥିତ ଚନ୍ଦ୍ରମାସଦୃଶ ପରମାତ୍ମାଙ୍କର ଗ୍ରହଣ ନ ହେବା କାରଣରୁ ସେହି ପରମେଶ୍ୱରଙ୍କୁ ସର୍ବଥା ସେହିଭଳି ମାନିବା ଅନୁଚିତ ।।୧୯

» ବୃଦ୍ଧିହ୍ରାସଭାକ୍ତ୍ୱମନ୍ତର୍ଭାବାଦୁଭୟସାମଞ୍ଜସ୍ୟାଦେବମ୍ ।। ୨୦ ।।

ଶରୀର ଭିତରେ ସ୍ଥିତ ହୋଇଥିବା କାରଣରୁ ଶରୀରଭଳି ପରମାତ୍ମା କ୍ଷୟବୃଦ୍ଧି ହେଉଥିବାର ସମ୍ଭାବନା ରହେ ଅତଃ ତାଙ୍କ ନିଷେଧରେ ପରମାତ୍ମା ଏବଂ ଚନ୍ଦ୍ର ପ୍ରତିବିମ୍ବ-- ଉଭୟର ସମାନତା ରହିଛି । ଅତଃ ଏହିଭଳି ଦୃଷ୍ଟାନ୍ତ ଦିଆଗଲା ।।୨୦

» ଦର୍ଶନାଚ୍ଚ ।। ୨୧।।

ଶ୍ରୁତିରେ ଅନ୍ୟ ଦୃଷ୍ଟାନ୍ତ ମଧ ଦେଖାଯାଏ, ଏଣୁ ମଧ (ଏହା ସିଦ୍ଧ ହେଉଛି କି ପରମାତ୍ମାଙ୍କର ସ୍ଥିତି ପ୍ରତିବିମ୍ବ ଭଳି ଅବାସ୍ତବିକ ନୁହେଁ) ।।୨୧

• ପ୍ରକୃତୈତାବତ୍ତ୍ୱାଧିକରଣମ୍ ।। ସୂ. ୨୨-୩୦।।

» ପ୍ରକୃତୈତାବତ୍ତ୍ୱଂ ହି ପ୍ରତିଷେଧତି ତତୋ ବ୍ରବୀତି ଚ ଭୂୟଃ ।। ୨୨

ଏହି ପ୍ରକରଣରେ ବ୍ରହ୍ମଙ୍କର ଯେଉଁ ଲକ୍ଷଣ ବତାଯାଇଛି ତାଙ୍କ ଇୟତ୍ତା ସମ୍ପର୍କରେ 'ନେତି ନେତି' ଶ୍ରୁତି ନିଷେଧ କରିଛି । କାହିଁକି ନାଁ ତାହା ପରେ ଦ୍ୱିତୀୟଥର ମଧ୍ୟ କୁହାଯାଇଛି ।।୨୨

» ତଦବ୍ୟକ୍ତମାହ ହି ।।୨୩।।

କାହିଁକି ନାଁ ଶ୍ରୁତି ସେହି ସଗୁଣ ରୂପକୁ ଇନ୍ଦ୍ରିୟମାନଙ୍କ ଦ୍ୱାରା ଅଗୋଚର ବୋଲି କହିଛନ୍ତି ।।୨୩

» ଅପି ଚ ସଂରାଧନେ ପ୍ରତ୍ୟକ୍ଷାନୁମାନାଭ୍ୟାମ୍ ।।୨୪।।

ଏହିଭଳି ଅବ୍ୟକ୍ତ ହେବାପରେ ମଧ୍ୟ ଆରାଧନାକରି ଉପାସକ ପରମେଶ୍ୱରଙ୍କର ପ୍ରତ୍ୟକ୍ଷ ଦର୍ଶନ ପାଏ ଏହି କଥା ବେଦ ଏବଂ ସ୍ମୃତି ଉଭୟଙ୍କର କଥନରୁ ସିଦ୍ଧ ହେଉଛି ।।୨୪

» ପ୍ରକାଶାଦିବଚ୍ଚାବୈଶେଷ୍ୟଂ ପ୍ରକାଶଶ୍ଚ କର୍ମଣ୍ୟଭ୍ୟାସାତ୍ ।।୨୫।।

ଅଗ୍ନି ଆଦିଙ୍କର ପ୍ରକାଶ ଆଦି ଗୁଣଭଳି ହିଁ ପରମାତ୍ମାଙ୍କଠାରେ ମଧ୍ୟ ଭେଦ ନାହିଁ: ପ୍ରକାଶ ମଧ୍ୟ କର୍ମରେ ଅଭ୍ୟାସ କରିବା ଦ୍ୱାରା ପ୍ରକଟିତ ହୋଇଥାଏ ।।୨୫

» ଅତୋଽନନ୍ତେନ ତଥା ହି ଲିଙ୍ଗମ୍ ।।୨୬।।

ଏହି ଉପର ବର୍ଣ୍ଣିତ କାରଣରୁ ଏହା ସିଦ୍ଧ ହେଉଛି କି, ଉକ୍ତ ବ୍ରହ୍ମ ଅଂନନ୍ତ ଦିବ୍ୟ କଲ୍ୟାଣମୟ ଗୁଣ ସମୁଦାୟ ସମ୍ପନ୍ନ ଅଟନ୍ତି: କାହିଁକି ନାଁ ସେହିଭଳି ଲକ୍ଷଣ ଉପଲବ୍ଧ ହେଉଛି ।।୨୬

» ଉଭୟବ୍ୟପଦେଶାତ୍ତ୍ୱହିକୁଣ୍ଡଳବତ୍ ।।୨୭।।

ଉଭୟ ପ୍ରକାରର କଥନ ଥିବାରୁ ସର୍ପରେ କୁଣ୍ଡଳାକାରତ୍ୱ ଭଳି ହିଁ ତାହାର ଭାବ ବୁଝିନେବା ଦରକାର ।।୨୭

» ପ୍ରକାଶାଶ୍ରୟବଦ୍ୱା ତେଜସ୍ତ୍ୱାତ୍ ।।୨୮।।

ଅଥବା ପ୍ରକାଶ ଏବଂ ତାହାର ଆଶ୍ରୟ ସଦୃଶ ତାଙ୍କର ଅଭେଦ ଭାବ ରହିଛି କାହିଁକି ନାଁ ତେଜ ଦୃଷ୍ଟିରୁ ଉଭୟ ହିଁ ଏକ ଅଟନ୍ତି ।।୨୮

» ପୂର୍ବବଦ୍ୱା ।।୨୯।।

ଅଥବା ଯେଉଁଭଳି ପ୍ରଥମେ ସିଦ୍ଧ କରାଯାଇଛି, ସେହିଭଳି (ଉଭୟର ଅଭେଦ ବୁଝିନେବା ଦରକାର) ।।୨୯

» ପ୍ରତିଷେଧାଚ୍ଚ ।।୩୦।।

ଅନ୍ୟର ପ୍ରତିଷେଧ ହେବାରୁ ମଧ ଅଭେଦ ସିଦ୍ଧ ହେଉଛି ।।୩୦

• ପରାଧିକରଣମ୍ ।। ସୂ. ୩୧-୩୭।।

» ପରମତସ୍ସେତୂନ୍ମାନସମ୍ବନ୍ଧଭେଦବ୍ୟପଦେଶେଭ୍ୟଃ ।।୩୧।

ଏହି ଜଡ଼-ଚେତନରୂପ ଉଭୟ ପ୍ରକୃତି ମଧରେ ସେହି ବ୍ରହ୍ମ ଶ୍ରେଷ୍ଠ ଅଟନ୍ତି କାହିଁକି ନାଁ ଶ୍ରୁତିରେ ସେତୁ, ଉନ୍ମାନ, ସମ୍ବନ୍ଧ ତଥା ଭେଦର ବର୍ଣ୍ଣନକରି ଏହା ସିଦ୍ଧ କରାଯାଇଛି ।।୩୧

» ସାମାନ୍ୟାତ୍ତୁ ।।୩୨।।

ଶ୍ରୁତିରେ ଭେଦ ଓ ଅଭେଦ ଉଭୟ ବର୍ଣ୍ଣନ ସମାନ ଭାବରେ ହୋଇଛି, ସେହି କାରଣରୁ ଏହା ନିଶ୍ଚିତ ହେଉଛି କି ଭେଦ ଓ ଅଭେଦ ଉଭୟ ପକ୍ଷ ମାନ୍ୟ ଅଟେ ।।୩୨

» ବୁଦ୍ଧ୍ୟର୍ଥଃ ପାଦବତ୍ ।।୩୩।।

ଅବୟବରହିତ ପରମାତ୍ମାଙ୍କୁ ଚାରିପାଦ ଭାବରେ ବତାଗଲା ଭଳି ମନନ, ନିଦିଧ୍ୟାସନ ଆଦି ଉପାସନା ପାଇଁ ସେହିଭଳି ଉପଦେଶ ଦିଆଯାଇଥାଏ ।।୩୩

» ସ୍ଥାନବିଶେଷାତ୍ପ୍ରକାଶାଦିବତ୍ ।।୩୪।।

ପ୍ରକାଶ ଆଦି ଭଳି ଶରୀରରୂପ ସ୍ଥାନର ବିଶେଷତା କାରଣରୁ ସେଥିରେ ନାନାତ୍ୱ ଆଦି ଭେଦ ହେବା ବିରୁଦ୍ଧ ନୁହେଁ ।।୩୪

» ଉପପତ୍ତେଶ୍ଚ ।।୩୫।।

ଶ୍ରୁତି ସଙ୍ଗତିରେ ମଧ ଏହି କଥା ସିଦ୍ଧ ହେଉଛି ।।୩୫

» ତଥାଽନ୍ୟପ୍ରତିଷେଧାତ୍ ।।୩୬।।

ସେହିଭଳି ଅନ୍ୟକୁ ନିଷେଧ କରାଯାଇଛି ଏଣୁ ମଧ ଏହା ସିଦ୍ଧ ହେଉଛି ।।୩୬

» ଅନେନ ସର୍ବଗତତ୍ୱମାୟାମଶବ୍ଦାଦିଭ୍ୟଃ ।।୩୭।।

ଏହିଭଳି ଭେଦ ଏବଂ ଅଭେଦର ବିବେଚନରେ ତଥା ଶ୍ରୁତିରେ ଯେଉଁ ବ୍ରହ୍ମର ବ୍ୟାପକତା ସୂଚିତକାରୀ ଶବ୍ଦ ଆଦି ହେତୁ ରହିଛି, ସେଥିରେ ମଧ ସେହି ବ୍ରହ୍ମଙ୍କୁ ସର୍ବଗତ ଅର୍ଥାତ୍ ସର୍ବତ୍ର ବ୍ୟାପକ ସିଦ୍ଧ ହେଉଛି ।।୩୭

• ଫଳାଧିକରଣମ୍ ।।ସୂ. ୩୮-୪୧।।

» ଫଳମତ ଉପପତ୍ତେଃ ।।୩୮।।

ଜୀବର କର୍ମଫଳ ସେହି ପରବ୍ରହ୍ମଙ୍କ ଦ୍ୱାରା ହିଁ ହୋଇଥାଏ କାହିଁକି ନାଁ ଏଭଳି ମାନିବା ଯୁକ୍ତିଯୁକ୍ତ ଅଟେ ।।୩୮

» ଶ୍ରୁତତ୍ୱାଚ୍ଚ ।। ୩୯।।

ଶ୍ରୁତିରେ ଏଭଳି ମଧ କୁହାଯାଇଛି, ଏଣୁ ମଧ (ଏହିଭଳି ମାନିବା ଠିକ୍‌ହେବ କି, କର୍ମର ଫଳ ପରମାତ୍ମାଙ୍କ ଠାରୁ ହିଁ ପ୍ରାପ୍ତ ହୁଏ) ।।୩୯

» ଧର୍ମଂ ଜୈମିନିରତ ଏବ ।।୪୦।।

ପୂର୍ବୋକ୍ତ କାରଣରୁ ହିଁ ଜୈମିନୀ ଧର୍ମ(କର୍ମ)କୁ (ଫଳଦାତା) କହିଛନ୍ତି ।।୪୦

» ପୂର୍ବଂ ତୁ ବାଦରାୟଣୋ ହେତୁବ୍ୟପଦେଶାତ୍ ।।୪୧।।

ପରନ୍ତୁ ବେଦବ୍ୟାସ ପୂର୍ବୋକ୍ତ ପରମେଶ୍ୱରଙ୍କୁ ହିଁ କର୍ମଫଳଦାତା ବୋଲି ମାନନ୍ତି କାହିଁକି ନାଁ ବେଦରେ ତାଙ୍କୁ ସମସ୍ତଙ୍କର କାରଣ ବୋଲି ବତାଯାଇଛି । ଏଣୁ ଏଠାରେ ଜୈମିନୀଙ୍କର କଥନ ଠିକ୍ ନୁହେଁ ।।୪୧

ଇତି ମହର୍ଷିବ୍ୟାସ ବିରଚିତେ ବ୍ରହ୍ମସୂତ୍ରେ
ତୃତୀୟାଧ୍ୟାୟସ୍ୟ ଦ୍ୱିତୀୟଃ ପାଦଃ ।।୨।।

# ତୃତୀୟ ପାଦ

*ଦ୍ୱିତୀୟପାଦରେ ଜୀବର ସ୍ୱପ୍ନାବସ୍ଥା ଏବଂ ସୁଷୁପ୍ତି ଅବସ୍ଥାର ବର୍ଣ୍ଣନାକରି ପରବ୍ରହ୍ମ ପରମେଶ୍ୱରଙ୍କର ସ୍ୱରୂପ ବିଷୟରେ ନିର୍ଣ୍ଣୟ କରାଗଲା କି ସେ ନିର୍ଗୁଣ ଓ ସଗୁଣ ଉଭୟ ଲକ୍ଷଣଯୁକ୍ତ ଅଟନ୍ତି । ତତ୍‌ପଶ୍ଚାତ୍ ସେହି ପରବ୍ରହ୍ମ ପରମେଶ୍ୱରଙ୍କର ନିଜର ଶକ୍ତିସ୍ୱରୂପ ପରା ଓ ଅପରା ପ୍ରକୃତି ଯୁକ୍ତ ଭେଦ ଓ ଅଭେଦ ରହିଛି, ଏହାର ନିରୂପଣ କରାଯାଇଛି । ପୁଣି ଶେଷରେ ତାହା ନିଶ୍ଚିତ କରାଯାଇଛି କି, ଜୀବର କର୍ମଫଳର ବ୍ୟବସ୍ଥାକାରୀ ଏକମାତ୍ର ସେହି ପରବ୍ରହ୍ମ ପରମେଶ୍ୱର ଅଟନ୍ତି । ଏବେ ବେଦାନ୍ତ ବାକ୍ୟରେ ଯେଉଁ ଏକ ଆତ୍ମବିଦ୍ୟାକୁ ଅନେକ ପ୍ରକାରେ ବର୍ଣ୍ଣନ କରାଯାଇଛି, ତାହାର ଏକତାକୁ ବତାଇ ନାନାସ୍ଥଳରେ ଆସୁଥିବା ଭଗବତ୍ ପ୍ରାପ୍ତି ବିଷୟକ ଭିନ୍ନ ଭିନ୍ନ ବାକ୍ୟ ବିରୋଧକୁ ଦୂରକରି ତାଙ୍କର ଏକତା ପ୍ରତିପାଦନ କରାଇବା ପାଇଁ ଏହି ତୃତୀୟ ପାଦର ବର୍ଣ୍ଣନା ହୋଇଛି ।*

*ସମସ୍ତ ଉପନିଷଦରେ ଯେଉଁ ଅଧ୍ୟାତ୍ମବିଦ୍ୟାର ବର୍ଣ୍ଣନ ଅଛି, ତାହା ଅଭିନ୍ନ ଅଟେ କାହିଁକି ନାଁ ଆଜ୍ଞା ଆଦିରେ ଭେଦ ନାହିଁ ।*

- ସର୍ବବେଦାନ୍ତପ୍ରତ୍ୟାୟାଧିକରଣମ୍ ।।ସୂ.୧-୪।।

» ସର୍ବବେଦାନ୍ତପ୍ରତ୍ୟୟଂ ଚୋଦନାଦ୍ୟବିଶେଷାତ୍ ।।୧।।

ସମସ୍ତ ଉପନିଷଦରେ ଯେଉଁ ଅଧ୍ୟାତ୍ମବିଦ୍ୟାର ବର୍ଣ୍ଣନା ହୋଇଛି, ତାହା ଅଭିନ୍ନ ଅଟେ କାହିଁକି ନାଁ ଆଜ୍ଞା ଆଦିରେ ଭେଦ ନାହିଁ ।।୧

» ଭେଦାନ୍ନେତି ଚେନ୍ନୈକସ୍ୟାମପି ।।୨।।

ଯଦି ଏଭଳି କୁହ, ସେହି ସ୍ଥାନରେ ବର୍ଣ୍ଣନାର ଭେଦ ରହିଛି, ସେଥିପାଇଁ ଏକତା ସିଦ୍ଧ ହେଉ ନାହିଁ, ତେବେ ଏକଥା କହିବା ଠିକ୍ ନୁହେଁ କାହିଁକି ନାଁ ଗୋଟିଏ ବିଦ୍ୟାରେ ମଧ (ଏହି ପ୍ରକାରର ଭେଦ ହେବା ଅନୁଚିତ ନୁହେଁ ।।୨

» ସ୍ୱାଧ୍ୟାୟସ୍ୟ ତଥାତ୍ୱେନ ହି ସମାଚାରେଽଧିକାରାଚ୍ଚ ସବବଚ୍ଚ ତନ୍ନିୟମଃ ।।୩।।

ଏହି ଶିରୋବ୍ରତକୁ ପାଳନ କରିବା ଅଧ୍ୟୟନର ଅଙ୍ଗ ଅଟେ କାହିଁକି ନାଁ ଆଥର୍ବଣ ଶାଖାଧାରୀ ବ୍ୟକ୍ତିଙ୍କର ପରମ୍ପରାଗତ ଶିଷ୍ଟାଚାରରେ ଅଧ୍ୟୟନର ଅଙ୍ଗରୂପେ ହିଁ ଏହାର ବିଧାନ ହୁଏ ଏବଂ ସେହି ବ୍ରତର ପାଳନ କରୁଥିବା ବ୍ୟକ୍ତିଙ୍କର ବ୍ରହ୍ମବିଦ୍ୟା ଅଧ୍ୟୟନରେ ଅଧିକାର ହେବା କାରଣରୁ ମଧ୍ୟ 'ସବ' ହୋମ ଭଳିଆ ସବୁକିଛି ଶିରୋବ୍ରତଯୁକ୍ତ ନିୟମ ଆଥର୍ବଣ ଶାଖାଯୁକ୍ତ ବ୍ୟକ୍ତିମାନଙ୍କ ପାଇଁ ହିଁ ହୋଇଥାଏ ।।୩

» ଦର୍ଶୟତି ଚ ।।୪।।

ଶ୍ରୁତିରେ ମଧ୍ୟ ଏହି କଥା ଦେଖାଯାଏ ।।୪

• ଉପସଂହାରାଧିକରଣମ୍ ।। ସୂ.୫।।

» ଉପସଂହାରୋଽର୍ଥାଭେଦାଦ୍ୱିଧିଶେଷବତ୍ସମାନେ ଚ ।।୫।।

ଏକ ପ୍ରକାରର ବିଦ୍ୟାରେ ହିଁ ପ୍ରୟୋଜନ କ୍ଷେତ୍ରରେ ଭେଦ ନ ହେବା କାରଣରୁ ଗୋଟିଏ ଜାଗାରେ କୁହାଯାଉଥିବା ଗୁଣର ଅନ୍ୟତ୍ର ଉପସଂହାର ଭାବରେ ବ୍ୟବହୃତ ହୁଏ, ତାହା ବିଧିଶେଷ ସଦୃଶ (ଉଚିତ ଅଟେ) ।।୫

• ଅନ୍ୟଥାତ୍ୱାଧିକରଣମ୍ ।।ସୂ.୬-୮।।

» ଅନ୍ୟଥାତ୍ୱଂ ଶବ୍ଦାଦିତି ଚେନ୍ନାବିଶେଷାତ୍ ।।୬।।

ଯଦି ଏହିଭଳି କୁହ କି, କୁହାଯାଇଥିବା ଶବ୍ଦ ଦ୍ୱାରା ଉଭୟର ଭିନ୍ନତା ପ୍ରତୀତ ହେଉଛି, ତେଣୁ ଏକତା ସିଦ୍ଧ ହେଉନାହିଁ: ତେବେ ସେଭଳି କିଛି କଥାନାହିଁ । ବିଧି ଏବଂ ଫଳ ଆଦିରେ ଭେଦ ନ ହେବା କାରଣରୁ ଉଭୟ ବିଦ୍ୟାରେ ସମାନତା ରହିଛି ।।୬

» ନ ବା ପ୍ରକରଣଭେଦାତ୍ପରୋବରୀୟସ୍ତ୍ୱାଦିବତ୍ ।।୭।।

ଅଥବା ପରମ ଉତ୍କୃଷ୍ଟତା ନିକୃଷ୍ଟତା ଆଦି ଗୁଣରେ ଯୁକ୍ତ ଅନ୍ୟ ବିଦ୍ୟାଭଳି ପ୍ରକରଣର ଭେଦରେ ଉକ୍ତ ଉଭୟ ବିଦ୍ୟା ଭିନ୍ନ ସିଦ୍ଧ ହୋଇ ନ ପାରନ୍ତି ।।୭

» ସଂଜ୍ଞାତଶ୍ଚେତ୍ତଦୁକ୍ତମସ୍ତି ତୁ ତଦପି ।।୮।।

ଯଦି କୁହକି, ସଂଜ୍ଞା ସାହାଯ୍ୟରେ ପରସ୍ପର ଭେଦ ହେବା କାରଣରୁ ଏକତା ସିଦ୍ଧ ହୋଇପାରୁନାହିଁ, ତେବେ ତାହାର ଉତ୍ତର ସୂତ୍ର-୩/୩/୧ରେ ପ୍ରଦତ୍ତ ହୋଇଛି । ଏପରିକି ତାହା ସଂଜ୍ଞାଭେଦ କାରଣରୁ ହେବାକୁ ଥିବା ବିଦ୍ୟା ବିଷୟକ ବିଷମତା ମଧ ଅନ୍ୟତ୍ର ଦର୍ଶାଉ ଅଛି ।।୮

- **ବ୍ୟାପ୍ତ୍ୟଧିକରଣମ୍ ।।ସୂ. ୯।।**

» **ବ୍ୟାପ୍ତେଶ୍ଚ ସମଞ୍ଜସମ୍ ।।୯।।**

ବ୍ରହ୍ମ ସର୍ବତ୍ର ବ୍ୟାପ୍ତ ଏହି କାରଣରୁ ମଧ ବ୍ରହ୍ମବିଦ୍ୟାରେ ସମାନତା ରହିଛି ।।୯

- **ସର୍ବାଭେଦାଧିକରଣମ୍ ।।ସୂ.୧୦।।**

» **ସର୍ବାଭେଦାଦନ୍ୟତ୍ରେମେ ।।୧୦।।**

ସର୍ବସ୍ୱରୂପ ପରବ୍ରହ୍ମ ସମ୍ବନ୍ଧୀବିଦ୍ୟା ସାହାଯ୍ୟରେ ଅନ୍ୟ ବିଦ୍ୟା ସମ୍ବନ୍ଧରେ ଏହି ପୂର୍ବସୂତ୍ରରେ କୁହାଯାଇଥିବା ସମସ୍ତ କାରଣର ଉପଯୋଗ ହୋଇଛି ।।୧୦

- **ଆନନ୍ଦାଦ୍ୟଧିକରଣମ୍ ।।ସୂ. ୧୧-୧୩।।**

» **ଆନନ୍ଦାଦୟଃ ପ୍ରଧାନସ୍ୟ ।।୧୧।।**

ଆନନ୍ଦ ଆଦି ସର୍ବଶ୍ରେଷ୍ଠ ପରବ୍ରହ୍ମ ପରମାତ୍ମାଙ୍କର ଧର୍ମ ଅଟେ । (ସେ ସମସ୍ତଙ୍କର ଅନ୍ୟତ୍ର ମଧ ବ୍ରହ୍ମ ବର୍ଣ୍ଣନାରେ ଅଧାହାର କରାଯାଇପାରେ ।) ।।୧୧

» **ପ୍ରିୟଶିରସ୍ତ୍ୱାଦ୍ୟପ୍ରାପ୍ତିରୁପଚୟାପଚୟୌ ହି ଭେଦେ ।।୧୨।।**

ପ୍ରିୟଶିରତ୍ୱ-- ପ୍ରିୟ ରୂପ ଶିର ହେବା ଆଦି ଧର୍ମ ପ୍ରାପ୍ତି ଅନ୍ୟତ୍ର ବ୍ରହ୍ମବିଦ୍ୟା ପ୍ରକରଣରେ ହୋଇନଥାଏ, କାହିଁକି ନାଁ ଏହିଭଳି ଶିର ଆଦି ଅଙ୍ଗମାନଙ୍କର ଭେଦକୁ ମାନିନେବା ପରେ ବ୍ରହ୍ମରେ କ୍ଷୟବୃଦ୍ଧିର ଦୋଷ ଉପସ୍ଥିତ ହେବ ।।୧୨

» **ଇତରେ ତ୍ୱର୍ଥସାମାନ୍ୟାତ୍ ।।୧୩।।**

କିନ୍ତୁ ଅନ୍ୟ ଆନନ୍ଦ ଆଦି ଯେଉଁ ଧର୍ମ ରହିଛି, ସେସବୁ ବ୍ରହ୍ମଙ୍କର ସ୍ୱରୂପ ପ୍ରତିପାଦନ କରିବା ପାଇଁ ଶ୍ରୁତିରେ କଥିତ ହୋଇଛି, ଏଣୁ ଅନ୍ୟତ୍ର ବ୍ରହ୍ମବିଦ୍ୟା ପ୍ରସଙ୍ଗରେ ତାହାର ଗ୍ରହଣ କରାଯାଉଛି । କାହିଁକି ନାଁ ସେ ସମସ୍ତରେ ଅର୍ଥର ସମାନତା ରହିଛି ।।୧୩

- ଆଧାନାଧିକରଣମ୍ ।।ସୂ. ୧୪-୧୫।।

» ଆଧାନାୟ ପ୍ରୟୋଜନାଭାବାତ୍ ।।୧୪।।

ଅନ୍ୟ କୌଣସି ପ୍ରକାରର ପ୍ରୟୋଜନ ନ ହେବା କାରଣରୁ ସେହି ପରମେଶ୍ୱରଙ୍କୁ ଭଲ ଭାବରେ ଚିନ୍ତନ କରିବାପାଇଁ (ତାହାକୁ ତତ୍ତ୍ୱରୂପକ ଦ୍ୱାରା ବୁଝାଯାଇଛି) ।।୧୪

» ଆତ୍ମଶବ୍ଦାଚ୍ଚ ।।୧୫।।

ଆତ୍ମ ଶବ୍ଦର ପ୍ରୟୋଗ ହେବା କାରଣରୁ ମଧ ଏହା ସିଦ୍ଧ ହେଉଛି ।।୧୫

- ଆତ୍ମଗୃହୀତ୍ୟଧିକରଣମ୍ ।।ସୂ. ୧୬-୧୭।।

» ଆତ୍ମଗୃହୀତିରିତରବଦୁତ୍ତରାତ୍ ।।୧୬।।

ଆତ୍ମଶବ୍ଦ ସାହାଯ୍ୟରେ ପରମାତ୍ମାଙ୍କର ଗ୍ରହଣ ଅନ୍ୟ ଶ୍ରୁତିଭଳି ତଦୁପରାନ୍ତ ସିଦ୍ଧ ହୋଇପାରେ ।।୧୬

» ଅନ୍ୱୟାଦିତି ଚେତ୍ସ୍ୟାଦବଧାରଣାତ୍ ।।୧୭।।

ଯଦି କୁହକି, ପ୍ରତ୍ୟେକ ବାକ୍ୟରେ ଆତ୍ମ ଶବ୍ଦର ଅନ୍ୱୟ ହେଉଥିବା କାରଣରୁ ଏହା ସିଦ୍ଧ ହେଉନାହିଁ କି ଆନନ୍ଦମୟ ବ୍ରହ୍ମ ଅଟେ, ତେବେ ତାହାର ଉତ୍ତର ଏହା ହେବକି ନିର୍ଦ୍ଧାରଣ କରାଯାଇଥିବା କାରଣରୁ ଏହି କଥା ସିଦ୍ଧ ଅଟେ ।।୧୭

- କାର୍ଯ୍ୟାଖ୍ୟାନାଧିକରଣମ୍ ।।ସୂ. ୧୮।।

» କାର୍ଯ୍ୟାଖ୍ୟାନାଦପୂର୍ବମ୍ ।।୧୮।।

ବ୍ରହ୍ମର କାର୍ଯ୍ୟ ବତାଯିବା କାରଣରୁ ଏହି ପୁରୁଷ ସେହି ପୂର୍ବୋକ୍ତ ବ୍ରହ୍ମ ହୋଇ ନ ପାରନ୍ତି ।।୧୮

- ସମାନାଧିକରଣମ୍ ।। ସୂ.୧୯।।

» ସମାନ ଏବଂ ଚାଭେଦାତ୍ ।।୧୯।।

ଗୋଟିଏ ଶାଖାରେ ମଧ ଏ ପ୍ରକାରର ବିଦ୍ୟାର ଏକତାକୁ ବୁଝିନେବା ଦରକାର, କାହିଁକି ନାଁ ଉଭୟ ସ୍ଥାନରେ ଉପାସ୍ୟରେ କୌଣସି ଭେଦ ନାହିଁ ।।୧୯

- ସମ୍ବନ୍ଧାଧିକରଣମ୍ ।।ସୂ.୨୦-୨୨।।

» **ସମ୍ବନ୍ଧାଦେବମନ୍ୟତ୍ରାପି ।।୨୦।।**

ଏହିଭଳି ଉପାସ୍ୟଙ୍କ ସମ୍ବନ୍ଧରେ ଅନ୍ୟ ସ୍ଥାନରେ ମଧ (କ'ଣ ବିଦ୍ୟାର ଏକତାକୁ ମାନି ନେବା ଦରକାର ?) ।।୨୦

» **ନ ବା ବିଶେଷାତ୍ ।।୨୧।।**

ଏହି ଦୁଇଟିର ଏକତା ମାନିବା ଅନୁଚିତ କାହିଁକି ନାଁ ଏହି ଉଭୟ ପୁରୁଷଙ୍କର ରହସ୍ୟମୟ ନାମ ଏବଂ ସ୍ଥାନରେ ଭେଦ କରାଯାଇଛି ।।୨୧

» **ଦର୍ଶୟତି ଚ  ଏହି କଥା ଦେଖାଯାଏ ମଧ ।।୨୨**

ଶ୍ରୁତିରେ ଏହିକଥା ଦେଖାଯାଏ ମଧ ।୨୨।।

● **ସମ୍ଭୃତ୍ୟଧିକରଣମ୍ ।।ସୂ.୨୩।।**

» **ସମ୍ଭୃତିଦ୍ୟୁବ୍ୟାପ୍ତ୍ୟପି ଚାତଃ ।।୨୩।।**

ତଥା ଏଇଥିପାଇଁ ଅର୍ଥାତ୍ ବିଦ୍ୟାର ଏକତା ନ ହେବା କାରଣରୁ ସମସ୍ତ ଲୋକକୁ ଧାରଣ କରିବା ତଥା ଦ୍ୟୁଲୋକ ଆଦି ଅଖିଳ ବ୍ରହ୍ମାଣ୍ଡକୁ ବ୍ୟାପ୍ତକରି ସ୍ଥିତ ହେବା-- ଉଭୟେ ବ୍ରହ୍ମ ସମ୍ବନ୍ଧୀ ଗୁଣ ଅଟନ୍ତି । ଏହା ମଧ ଅନ୍ୟତ୍ର (ନେତ୍ରାନ୍ତର୍ବର୍ତ୍ତୀ ଆଦି ପୁରୁଷରେ) ନେବା ଅନୁଚିତ ।।୨୩

● **ପୁରୁଷବିଦ୍ୟାଽଧିକରଣମ୍ । ସୂ. ୨୪।।**

» **ପୁରୁଷବିଦ୍ୟାମିବ ଚେତରେଷାମନାମ୍ନାନାତ୍ ।।୨୪।।**

ପୁରୁଷ ବିଦ୍ୟାରେ ଯେଉଁ ଗୁଣ ବତାଯାଇଛି, ସେହିଭଳି ଗୁଣ ମଧ ଅନ୍ୟ ପୁରୁଷଙ୍କର ହୋଇ ନ ପାରେ କାହିଁକି ନାଁ ଶ୍ରୁତିରେ ତାଙ୍କର ଏଭଳି ଗୁଣ କେଉଁଠିହେଲେ ବତାଯାଇନାହିଁ ।।୨୪

● **ବେଧାଦ୍ୟଧିକରଣମ୍ ।। ସୂ. ୨୫।।**

» **ବେଧାଦ୍ୟର୍ଥଭେଦାତ୍ ।।୨୫।।**

ବିନ୍ଧିବା ଆଦିର ବର୍ଣ୍ଣନାକରି ଯେଉଁ ବ୍ରହ୍ମକୁ ବେଧ କରିବା ଲକ୍ଷ୍ୟ ବତାଯାଇଛି, ଏହି ସମସ୍ତଙ୍କର ଅଧାହାର ମଧ ଅନ୍ୟ ବିଦ୍ୟାମାନଙ୍କରେ କରିବା ଅନୁଚିତ କାହିଁକି ନାଁ ସେଠାରେ ପ୍ରୟୋଜନର ଭେଦ ରହିଛି ।।୨୫

• ହାନ୍ୟଧିକରଣମ୍ ।। ସୂ. ୨୬।।

» ହାନୌ ତୂପାୟନଶବ୍ଦଶେଷତ୍ୱାତ୍‌କୁଶାଛନ୍ଦସ୍ତୁତ୍ୟୁପ ଗାନବତ୍ତଦୁକ୍ତମ୍ ।।୨୬।।

ଯେଉଁଠାରେ କେବଳ ଦୁଃଖ, ଶୋକ, ପୁଣ୍ୟ, ପାପ ଆଦିର ନାଶ ବର୍ଣ୍ଣିତ ହୋଇଛି, ସେହିଭଳି ଶ୍ରୁତିରେ ମଧ ଲାଭରୂପ ପରମଧାମର ପ୍ରାପ୍ତି ଆଦିର ଫଳ ମଧ ଅଧାହାର କରିନେବା ଦରକାର: କାହିଁକି ନାଁ ତାହା ବାକ୍ୟର ଶେଷଭାଗ ଅଟେ । ଏହିକଥା କୁଶା, ଛନ୍ଦ, ସ୍ତୁତି ଓ ଉପଗାନ ଭଳି ବୁଝିବା ଦରକାର । ଏଭଳି ପୂର୍ବ ମୀମାଂସାରେ କୁହାଯାଇଛି ।।୨୬

• ସାମ୍ପରାୟାଧିକରଣମ୍ ।।ସୂ. ୨୭-୨୮।।

» ସାମ୍ପରାୟେ ତର୍ତ୍ତବ୍ୟାଭାବାତ୍ତଥା ହ୍ୟନ୍ୟେ ।।୨୭।।

ଜ୍ଞାନୀଙ୍କ ପାଇଁ ପରଲୋକରେ ଭୋଗ ଦ୍ୱାରା ପାରକରିବା ଯୋଗ୍ୟ କୌଣସି କର୍ମଫଳ ଅବଶିଷ୍ଟ ରହେନାହିଁ ଏହି କାରଣରୁ ତାଙ୍କର ପୁଣ୍ୟକର୍ମ ମଧ ଏଠାରେ ସମାପ୍ତ ହୋଇଯାଉଛି । କାହିଁକି ନାଁ ଏହିକଥା ଅନ୍ୟଶାଖାର ବ୍ୟକ୍ତିମାନେ କହନ୍ତି ।।୨୭

» ଛନ୍ଦତ ଉଭୟଥାବିରୋଧାତ୍ ।।୨୮।।

ଜ୍ଞାନୀ ପୁରୁଷଙ୍କର ସଂକଳ୍ପ ଅନୁସାରେ ଉଭୟ ପ୍ରକାରର ସ୍ଥିତି ହେବାରେ କୌଣସି ବିରୋଧ ନାହିଁ ।।୨୮

• ଗତେରର୍ଥବତ୍ତ୍ୱାଧିକରଣମ୍ ।।ସୂ. ୨୯-୩୦।।

» ଗତେରର୍ଥବତ୍ତ୍ୱମୁଭୟଥାଽନ୍ୟଥା ହି ବିରୋଧଃ ।।୨୯।।

ଗତିବୋଧକ ଶ୍ରୁତିର ସାର୍ଥକତା ଉଭୟ ପ୍ରକାରେ ବ୍ରହ୍ମଙ୍କ ପ୍ରାପ୍ତି ମାନିବା ଦ୍ୱାରା ହୁଏ କାହିଁକି ନାଁ ଯଦି ଅନ୍ୟ ପ୍ରକାରେ ମାନି ନିଆଯାଏ, ତେବେ ଶ୍ରୁତିରେ ପରସ୍ପର ବିରୋଧ ହେବ ।।୨୯

» ଉପପନ୍ନସ୍ତଲ୍ଲକ୍ଷଣାର୍ଥୋପଲବ୍ଧେର୍ଲୋକବତ୍ ।।୩୦।।

ସେହି ଦେବଯାନ ମାର୍ଗ ଦ୍ୱାରା ବ୍ରହ୍ମଲୋକକୁ ଯିବାପାଇଁ ଉପଯୁକ୍ତ ସୂକ୍ଷ୍ମ ଶରୀର ଆଦି ଉପକରଣ ପ୍ରାପ୍ତିର କଥନ ହେବାରୁ ତାଙ୍କ ପାଇଁ ବ୍ରହ୍ମଲୋକ ଗମନର

କଥନ ଯୁକ୍ତିସଙ୍ଗତ ଅଟେ । ଲୋକମାନଙ୍କଠାରେ ଏହା ମଧ ଦେଖାଯାଉଛି ।।୩୦

- ଅନିୟମାଧିକରଣମ୍ ।। ସୂ.୩୧ ।।

» ଅନିୟମଃ ସର୍ବସାମବିରୋଧଃ ଶବ୍ଦାନୁମାନାଭ୍ୟାମ୍ ।।୩୧

ଏଭଳି ନିୟମ ନାହିଁ କି ତାଙ୍କୁ ବିଦ୍ୟା ଅନୁସାରେ ଉପାସନାକାରୀ ଦେବଯାନ ମାର୍ଗରେ ଗମନ କରିଥାନ୍ତି । ଅପିତୁ ବ୍ରହ୍ମଲୋକକୁ ଯାତ୍ରା କରୁଥିବା ସମସ୍ତ ସାଧକଙ୍କର ଗତି ସେହି ମାର୍ଗରେ ହୋଇଥାଏ । ଏହିକଥା ଶ୍ରୁତି ଆଉ ସ୍ମୃତି ଆଦିରେ ସିଦ୍ଧ ହେଉଛି, ତେଣୁ କୌଣସି ବିରୋଧ ନାହିଁ ।।୩୧

- ଯାବଦଧିକାରାଧିକରଣମ୍ ।।ସୂ. ୩୨ ।।

» ଯାବଦଧିକାରମବସ୍ଥିତିରାଧିକାରିକାଣାମ୍ ।।୩୨ ।।

ଯେଉଁ ଅଧିକାରୀ ପୁରୁଷ ଅଛନ୍ତି, ତାଙ୍କର ଯେ ପର୍ଯ୍ୟନ୍ତ ଅଧିକାର ସମାପ୍ତି ହୋଇନାହିଁ ସେ ପର୍ଯ୍ୟନ୍ତ ତାଙ୍କର ସ୍ୱ-ଇଚ୍ଛାନୁଯାୟୀ ସ୍ଥିତି ରହେ ।।୩୨

- ଅକ୍ଷରଧଧିକରଣମ୍ ।।ସୂ.୩୩।।

» ଅକ୍ଷରଧିୟାଂ ତ୍ୱବରୋଧଃ ସାମାନ୍ୟତଭାବାଭ୍ୟାମୌପସଦବଉଦୁକ୍ତମ୍ ।।୩୩।।

ଅକ୍ଷର ଅର୍ଥାତ୍ ପରମାତ୍ମାଙ୍କର ନିର୍ଗୁଣ, ନିରାକାର ବିଷୟକ ଲକ୍ଷଣର ମଧ ସବୁ ସ୍ଥାନରେ ଅଧାହାର କରିନେବା ଉଚିତ କାହିଁକି ନାଁ ବ୍ରହ୍ମଙ୍କର ସମସ୍ତ ବିଶେଷଣ ସମାନ ଆଉ ତାଙ୍କ ସ୍ୱରୂପକୁ ଲକ୍ଷ୍ୟ କରାଇବାର ଭାବ ମଧ ସମାନ । ଅତଃ 'ଉପସତ୍' କର୍ମ ସମ୍ବନ୍ଧୀ ମନ୍ତ୍ର ଭଳି ଅଧାହାର କରିନେବା ଉଚିତ, ଏଠାରେ ଏହିକଥା କୁହାଯାଇଛି ।।୩୩

- ଇୟଦଧିକରଣମ୍ ।। ସୂ. ୩୪।।

» ଇୟଦାମନନାତ୍ ।।୩୪।।

ଉକ୍ତ ତିନିଗୋଟି ମନ୍ତ୍ରରେ ସ୍ଥାନରେ ବ୍ରହ୍ମବିଦ୍ୟାର ବର୍ଣ୍ଣନ ହୋଇଛି କାହିଁକି ନାଁ ସବୁସ୍ଥାନରେ ଇୟତ୍ତା (ଏତିକି ପଣ)ର ବର୍ଣ୍ଣନା ସମାନ ଭାବରେ ଆମକୁ ମିଳେ ।।୩୪

• ଅନ୍ତରତ୍ୱାଧିକରଣମ୍ ।। ସୂ. ୩୫-୩୬।।

» ଅନ୍ତରା ଭୂତଗ୍ରାମବତ୍ସ୍ୱାତ୍ମନଃ ।। ୩୫।।

ଆକାଶ ଆଦି ଭୂତ ସମୁଦାୟ ଭଳି ସେହି ପରମାତ୍ମା ସାଧକଙ୍କର ନିଜ ଆତ୍ମାର ମଧ୍ୟ ଅନ୍ତରାତ୍ମା ବା ଅନ୍ତର୍ଯ୍ୟାମୀ ଅଟନ୍ତି କାହିଁକି ନାଁ ଏହିକଥା ହିଁ ଶ୍ରୁତିରେ କୁହାଯାଇଛି ।।୩୫

» ଅନ୍ୟଥା ଭେଦାନୁପପତ୍ତିରିତି ଚେନ୍ନୋପଦେଶାନ୍ତରବତ୍ ।।୩୬

ଯଦି କୁହ, ଅନ୍ୟ ପ୍ରକାରେ ଅଭେଦରେ ସିଦ୍ଧି ହେବନାହିଁ, ଏଣୁ ଉକ୍ତ ପ୍ରକରଣରେ ଜୀବାତ୍ମା ଓ ପରମାତ୍ମାଙ୍କର ଅଭେଦ ମାନିବା ଉଚିତ ହେବ ତେବେ ଏହା ଠିକ୍ ନୁହେଁ କାହିଁକି ନାଁ ଅନ୍ୟ ଉପଦେଶ ଭଳି ଅଭେଦରେ ସିଦ୍ଧି ହୋଇଯିବ ।।୩୬

• ବ୍ୟତିହାରାଧିକରଣମ୍ ।। ସୂ. ୩୭।।

» ବ୍ୟତିହାରୋ ବିଶିଂଷନ୍ତି ହୀତରବତ୍ ।।୩୭।।

ପରସ୍ପର ବ୍ୟତ୍ୟୟକରି ଅଭେଦର ବର୍ଣ୍ଣନା କରାଯାଏ, ଏଣୁ ଉପାଧିକୃତ ଭେଦ ସିଦ୍ଧ ହୁଏନାହିଁ କାହିଁକି ନାଁ ସମଗ୍ର ଶ୍ରୁତି ଅନ୍ୟଭଳି ବିଶେଷଣ ଦେଇ ବର୍ଣ୍ଣନା କରିଛନ୍ତି ।।୩୭

• ସତ୍ୟାଦ୍ୟଧିକରଣମ୍ ।।ସୂ.୩୮।।

» ସୈବ ହି ସତ୍ୟାଦୟଃ ।।୩୮।।

ପରମାତ୍ମା ଏବଂ ଜୀବର ଔପାଧିକ ଭେଦ ତଥା ବାସ୍ତବରେ ଅତ୍ୟନ୍ତ ଅଭେଦ ମାନିନେବା ପରେ ସେହି ଅନୁପପତ୍ତି ରହେ କାହିଁକି ନାଁ ପରମାତ୍ମାଙ୍କର ସତ୍ୟ ସଂକଳ୍ପତ୍ୱ ଆଦି ଧର୍ମ ଜୀବାତ୍ମାଙ୍କର ବୋଲି ମାନି ହୁଏନାହିଁ ।।୩୮

• କାମାଦ୍ୟଧିକରଣମ୍ ।।ସୂ.୩୯।।

» କାମାଦୀତରତ୍ର ତତ୍ର ଚାୟତନାଦିଭ୍ୟଃ।।୩୯।।

ସେହି ପରବ୍ରହ୍ମଙ୍କର ଅନ୍ୟ ସ୍ଥାନରେ ବତାଯାଇଥିବା ସତ୍ୟକାମତ୍ୱ ଆଦି ଧର୍ମ ଯେଉଁଠାରେ ନିର୍ବିଶେଷ ସ୍ୱରୂପର ବର୍ଣ୍ଣନ ହୋଇଛି, ସେଠାରେ ମଧ୍ୟ ଘଟେ କାହିଁକି ନାଁ ସେଠାରେ ତାହାର ସର୍ବାଧାରତ୍ୱ ଆଦି ଧର୍ମର ବର୍ଣ୍ଣନା ମିଳେ ।।୩୯

- ଆଦରାଧିକରଣମ୍ ।।ସୂ.୪୦-୪୧।।

» ଆଦରାଦଲୋପଃ ।।୪୦।।

ଉକ୍ତ କଥନ ପରମେଶ୍ୱରଙ୍କ ପ୍ରତି ଆଦର ପ୍ରଦର୍ଶକ ହୋଇଥିବା କାରଣରୁ ସେଥିରେ ଅନ୍ୟ ଦ୍ରଷ୍ଟାଙ୍କର ଲୋପ ଅର୍ଥାତ୍ ନିଷେଧ କରାଯାଏ ନାହିଁ ।।୪୦

» ଉପସ୍ଥିତେଽତସ୍ତଦ୍ବଚନାତ୍ ।।୪୧।।

ଉକ୍ତ ବଚନ ଦ୍ୱାରା କୌଣସିମତେ ଅନ୍ୟ ଚେତନର ନିଷେଧପ୍ରାପ୍ତ ହେବାପରେ ମଧ ଏହି ବ୍ରହ୍ମଙ୍କ ଅପେକ୍ଷା ଅନ୍ୟ ଦ୍ରଷ୍ଟାଙ୍କର ନିଷେଧ ବତାଇଥିବା କାରଣରୁ ଉକ୍ତ କଥନ ଆଦରାର୍ଥକ ଅଟେ କାରଣ ସେହି ବାକ୍ୟ ସହିତ ବାରମ୍ବାର ଅତଃ ଶବ୍ଦର ପ୍ରୟୋଗ କରାଯାଇଛି ।।୪୧

- ତନ୍ନିର୍ଧାରଣାଧିକରଣମ୍ ।।ସୂ.୪୨।।

» ତନ୍ନିର୍ଧାରଣାନିୟମସ୍ତଦ୍ଦୃଷ୍ଟେଃ ପୃଥଗ୍ଘ୍ୟପ୍ରତିବନ୍ଧଃ ଫଳମ୍ ।।୪୨।।

ଭୋଗମାନଙ୍କର ଭୋଗ କରିବା ପାଇଁ ନିଶ୍ଚିତ ନିୟମ ନାହିଁ କାହିଁକି ନାଁ ଏହିକଥା ସେହି ପ୍ରକରଣରେ ବାରମ୍ବାର ଯଦି ଶବ୍ଦର ପ୍ରୟୋଗଯୋଗୁଁ ଦେଖାଯାଇଛି । ଏହା ବ୍ୟତୀତ ଅନ୍ୟ କାରଣ ମଧ ଏହା ହୋଇପାରେ କି, କାମ ଉପଭୋଗ ଦ୍ୱାରା ଭିନ୍ନ ସଂକଳ୍ପୀଙ୍କ ପାଇଁ ଜନ୍ମ-ମରଣର ବନ୍ଧନରୁ ମୁକ୍ତ ହେବାର ଫଳ ବତାଯାଇଛି ।।୪୨

- ପ୍ରଦାନାଧିକରଣମ୍ ।। ସୂ.୪୩।।

» ପ୍ରଦାନବଦେବ ତଦୁକ୍ତମ୍ ।।୪୩।।

ଉକ୍ତ କଥନ ବରଦାନ ଭଳି ଅଟେ ।।୪୩

- ଲିଙ୍ଗଭୂୟସ୍ତ୍ୱାଧିକରଣମ୍ ।। ସୂ. ୪୪-୫୨।।

» ଲିଙ୍ଗଭୂୟସ୍ତ୍ୱାତ୍ତଦ୍ଧି ବଲୀୟସ୍ତଦପି ।।୪୪।।

ଜନ୍ମ-ମରଣରୂପ ସଂସାରରୁ ସବୁବେଳ ପାଇଁ ମୁକ୍ତହୋଇ ସେହି ପରବ୍ରହ୍ମଙ୍କୁ ପ୍ରାପ୍ତ ହୋଇଯିବା ରୂପ ଫଳ ବତାଉଥିବା ବ୍ୟକ୍ତିଙ୍କର ଲକ୍ଷଣରେ ଆଧିକ୍ୟତା ହେବା କାରଣରୁ ଉକ୍ତ ଫଳ ବଳବାନ୍ ବା ମୁଖ୍ୟ ଅଟେ କାହିଁକି ନାଁ ତାହା ଅନ୍ୟଫଳର ବର୍ଣ୍ଣନାରେ ମଧ ମୁଖ୍ୟ ଫଳର ମହତ୍ତ୍ୱ ପ୍ରକଟ କରିଥାଏ ।।୪୪

» ପୂର୍ବବିକଳ୍ପଃ ପ୍ରକରଣାତ୍ସ୍ୟାତ୍କ୍ରିୟା ମାନସବତ୍ ।। ୪୫ ।।

ଶାରୀରିକ ଏବଂ ମାନସିକ କ୍ରିୟାମାନଙ୍କରେ ସ୍ୱୀକୃତ ବିକଳ୍ପ ଭଳି ପ୍ରଥମେ କୁହାଯାଇଥିବା ଅଗ୍ନି ବିଦ୍ୟା ମଧ ବିକଳ୍ପ ଦ୍ୱାରା ମୁକ୍ତିର କାରଣ ହୋଇପାରେ । ଏହି କଥା ପ୍ରକରଣରୁ ସିଦ୍ଧ ହେଉଛି ।।୪୫

» ଅତିଦେଶାଚ୍ଚ ।।୪୬।।

ଅତି ଦେଶ ଯୋଗୁଁ ଅର୍ଥାତ୍ ବିଦ୍ୟାର ସମାନ କର୍ମକୁ ମୁକ୍ତିର କାରକ ବୋଲି ବତାଯିବା କାରଣରୁ ମଧ ଉପରେ କୁହାଯାଇଥିବା କଥା ସିଦ୍ଧ ହେଉଛି ।।୪୬

» ବିଦ୍ୟୈବ ତୁ ନିର୍ଧାରଣାତ୍ ।।୪୭।।

କିନ୍ତୁ ଶ୍ରୁତିମାନଙ୍କରେ ନିଶ୍ଚିତରୂପେ କଥିତ ହୋଇଥିବା କାରଣରୁ କେବଳମାତ୍ର ବ୍ରହ୍ମବିଦ୍ୟା ହିଁ ମୁକ୍ତିର କାରଣ ହୁଏ କର୍ମ ନୁହେଁ ।।୪୭

» ଦର୍ଶନାଚ୍ଚ ।।୪୮।।

ଶ୍ରୁତିରେ ସ୍ଥାନେ ସ୍ଥାନେ ସେଭଳି ବର୍ଣ୍ଣନା ଦେଖାଯିବାରୁ ମଧ ଏହା ଦୃଢ ହୋଇଯାଉଛି ।।୪୮

» ଶ୍ରୁତ୍ୟାଦିବଲୀୟସ୍ତ୍ୱାଚ୍ଚ ନ ବାଧଃ ।।୪୯।।

ପ୍ରକରଣ ଅପେକ୍ଷା ଶ୍ରୁତି ପ୍ରମାଣ ଓ ଲକ୍ଷଣ ଆଦି ବଳବାନ୍ ହୋଇଥିବା କାରଣରୁ ପ୍ରକରଣ ସାହାଯ୍ୟରେ ସିଦ୍ଧାନ୍ତର ବାଧକ ହୋଇ ନ ପାରେ ।।୪୯

» ଅନୁବନ୍ଧାଦିଭ୍ୟଃ ପ୍ରଜ୍ଞାନ୍ତରପୃଥକ୍ତ୍ୱବଦ୍ଦୃଷ୍ଟଶ୍ଚ ତଦୁକ୍ତମ୍ ।।୫୦।।

ଭାବ ବିଷୟକ ଅନୁବନ୍ଧ ଆଦିର ଭେଦରେ ଉଦ୍ଦେଶ୍ୟ ଭେଦଜନିତ କରାଯାଉଥିବା ଅନ୍ୟ ଉପାସନା ମାନଙ୍କରେ ପାର୍ଥକ୍ୟ ବା ଭେଦ ଭଳି ଏହାର ମଧ ପୃଥକତା ପ୍ରତିପାଦିତ ହୁଏ । ଏହଭଳି କଥନ ସେହି ସେହି ପ୍ରକରଣରେ ଦେଖାଯାଇଛି ତଥା ଏହା ପ୍ରଥମେ ମଧ ବତାଯାଇଛି ।।୫୦

» ନ ସାମାନ୍ୟାଦପ୍ୟୁପଲବ୍ଧେର୍ମୃତ୍ୟୁବନ୍ନ ହି ଲୋକାପତ୍ତିଃ ।।୫୧।।

ଯଦ୍ୟପି ସମସ୍ତ ବ୍ରହ୍ମବିଦ୍ୟା ସମାନ ଭାବରେ ମୋକ୍ଷର କାରଣ ହୁଏ ତଥାପି ତନ୍ମଧରେ ହେଉଥିବା ଫଳଭେଦର ନିଷେଧ ନାହିଁ କାହିଁକି ନାଁ ପରବ୍ରହ୍ମ ପରମେଶ୍ୱରଙ୍କର ସାକ୍ଷାତକାର ହୋଇଯିବା ପରେ ଯେଉଁଭଳି ମୃତ୍ୟୁ ହୋଇ

ମଧ ଜୀବାତ୍ମାର ସ୍ଥୂଳଶରୀରରେ ସମ୍ବନ୍ଧ ରହେ ନାହିଁ, ସେହିଭଳି ତାହାର ସୂକ୍ଷ୍ମ ଅଥବା କାରଣ କୌଣସି ଶରୀରରେ ସମ୍ବନ୍ଧ ରହେନାହିଁ, ଏଣୁ କୌଣସି ଲୋକର ପ୍ରାପ୍ତି ହୋଇ ନ ପାରେ ।।୫୧

» **ପରେଣ ଚ ଶବ୍ଦସ୍ୟ ତାଦ୍ୱିଧଂ ଭୂୟସ୍ତ୍ୱାତ୍ତ୍ୱନୁବନ୍ଧଃ ।।୫୨।।**

ପରବର୍ତ୍ତୀ ମନ୍ତ୍ରରେ ଏହା ସିଦ୍ଧ ହୋଇଛି ଏବଂ ସେଥିରେ କୁହାଯାଇଥିବା ଶବ୍ଦ ସମୁଦାୟର ସେହିଭଳି ଭାବ ହେଉଛି କିନ୍ତୁ ଅନ୍ୟ ସାଧକମାନଙ୍କର ଅନ୍ୟ ଭାବର ଆଧିକ୍ୟତା କାରଣରୁ ସୂକ୍ଷ୍ମ ଓ କାରଣ ଶରୀରରେ ସମ୍ବନ୍ଧ ରହିଛି । ଯେଉଁଥିପାଇଁ ସେ ବ୍ରହ୍ମଲୋକକୁ ଗମନକରେ ।।୫୨

• **ଏକାତ୍ମ୍ୟାଧିକରଣମ୍ ।।ସୂ. ୫୩-୫୪।।**

» **ଏକ ଆତ୍ମନଃ ଶରୀରେ ଭାବାତ୍ ।।୫୩।।**

କେହି କେହି କହନ୍ତି କି ଆତ୍ମାର ଶରୀର ହେବାରୁ, ଭାବ ହେଉଥିବା କାରଣରୁ ଶରୀର ଠାରୁ ଭିନ୍ନ ଆତ୍ମାର ସତ୍ତା ନାହିଁ ।।୫୩

» **ବ୍ୟତିରେକସ୍ତଦ୍ଭାବାଭାବିତ୍ୱାନ୍ନ ତୂପଲବ୍ଧିବତ୍ ।।୫୪।।**

ଶରୀରଠାରୁ ଆତ୍ମା ଭିନ୍ନ ଅଟେ, କାହିଁକି ନାଁ ଶରୀର ରହି ମଧ ସେଥିରେ ଆତ୍ମା ରହେନାହିଁ, ଏଣୁ ଆତ୍ମା ଶରୀର ନୁହେଁ କିନ୍ତୁ ଜ୍ଞାତାପଣର ଉପଲବ୍ଧି ସଦୃଶ ଆତ୍ମାର ଶରୀର ଠାରୁ ଭିନ୍ନ ହେବା ସିଦ୍ଧ ହେଉଛି ।।୫୪

• **ଅଙ୍ଗାବବଦ୍ଧାଧିକରଣମ୍ ।।ସୂ. ୫୫-୫୬।।**

» **ଅଙ୍ଗାବବଦ୍ଧାସ୍ତୁ ନ ଶାଖାସୁ ହି ପ୍ରତିବେଦମ୍ ।।୫୫।।**

ଯଜ୍ଞରେ ଉଦ୍ଗୀଥ ଆଦି ଅଙ୍ଗମାନଙ୍କ ସାହାଯ୍ୟରେ ସମ୍ବନ୍ଧ ଉପାସନାଗଣ ଯେଉଁ ଶାଖାରେ କୁହାଯାଇଛନ୍ତି, ସେଥିରେ କରିବାଯୋଗ୍ୟ: ଏଭଳି କିଛି ନାହିଁ କିନ୍ତୁ ପ୍ରତ୍ୟେକ ବେଦର ଶାଖାମାନଙ୍କରେ ତାହାର ଅନୁଷ୍ଠାନ କରିପାରିବା ।।୫୫

» **ମନ୍ତ୍ରାଦିବଦ୍ୱାବିରୋଧଃ ।।୫୬।।**

ଅଥବା ଏଭଳି ବୁଝିବା ଦରକାର କି, ମନ୍ତ୍ର ଆଦି ଭଳି ଏଥିରେ କୌଣସି ବିରୋଧ ନାହିଁ ।।୫୬

• **ଭୂମଜ୍ୟାୟସ୍ତ୍ୱାଧିକରଣମ୍ ।।ସୂ.୫୭।।**

» ଭୂମ୍ନଃ କ୍ରତୁବଜ୍ଜ୍ୟାୟସ୍ତ୍ୱଂ ତଥା ହି ଦର୍ଶୟତି ।।୫୭।।

ଅଙ୍ଗ-ଉପାଙ୍ଗ ସାହାଯ୍ୟରେ ପରିପୂର୍ଣ୍ଣ ଯଜ୍ଞଭଳି ପୂର୍ଣ୍ଣ ଉପାସନାର ଶ୍ରେଷ୍ଠତା ବତାଯାଇଛି କାହିଁକି ନାଁ ସେହିଭଳି କଥନ ଶ୍ରୁତିରେ ଦେଖିବାକୁ ମିଳୁଛି ।।୫୭

• ଶବ୍ଦାଦିଭେଦାଧିକରଣମ୍ ।।ସୂ.୫୮।।

» ନାନା ଶବ୍ଦାଦିଭେଦାତ୍ ।।୫୮।।

ଶବ୍ଦ ଆଦିର ଭେଦ ହୋଇଥିବା କାରଣରୁ ସମସ୍ତ ବିଦ୍ୟା ଭିନ୍ନ ଭିନ୍ନ ଅଟନ୍ତି ।।୫୮

• ବିକଳ୍ପାଧିକରଣମ୍ ।।ସୂ.୫୯।।

» ବିକଳ୍ପୋଽବିଶିଷ୍ଟଫଳତ୍ୱାତ୍ ।।୫୯।।

ସମସ୍ତ ବିଦ୍ୟାମାନଙ୍କରେ ଏକାପ୍ରକାର ଫଳ ରହିଛି, ଫଳରେ ଭେଦ ନାହିଁ: ଏଣୁ ଅଲଗା ଅଲଗା ଭାବରେ ଅନୁଷ୍ଠାନ କରିବା ଉଚିତ ହେବ ।।୫୯

• କାମ୍ୟାଧିକରଣମ୍ ।।ସୂ.୬୦।।

» କାମ୍ୟାସ୍ତୁ ଯଥାକାମଂ ସମୁଚ୍ଚୀୟେରନ୍ନ ବା ପୂର୍ବହେତ୍ୱଭାବାତ୍ ।।୬୦।।

ସକାମ ଉପାସନାର ଅନୁଷ୍ଠାନ ନିଜ ନିଜ କାମନା ଅନୁସାରେ ଏକତ୍ରକରି କରିବା ଅଥବା ଏକତ୍ର ନ କରି ଅଲଗା ଅଲଗା କରିବା କାରଣ ଏଥିରେ ପୂର୍ବୋକ୍ତ କାରଣର(ଫଳ ସମାନତା)ର ଅଭାବ ରହିଛି ।।୬୦

• ଯଥାଶ୍ରୟଭାବାଧିକରଣମ୍ ।।ସୂ. ୬୧-୬୬।।

» ଅଙ୍ଗେଷୁ ଯଥାଶ୍ରୟଭାବଃ ।।୬୧।।

ଭିନ୍ନ ଭିନ୍ନ ଅଙ୍ଗରେ (କରିବାଯୋଗ୍ୟ ଉପାସନାଗୁଡ଼ିକୁ) ଯଥାଶ୍ରୟ ଭାବ ରହିଛି ଅର୍ଥାତ୍ ଯେଉଁ ଉପାସନା ଯେଉଁ ଅଙ୍ଗର ଆଶ୍ରିତ ଅଟେ, ସେହି ଅଙ୍ଗ ଅନୁସାରେ ହିଁ ସେହି ଉପାସନାର ଭାବକୁ ମଧ ବୁଝିନେବା ଦରକାର ।।୬୧

» ଶିଷ୍ଟେଶ୍ଚ ।।୬୨।।

ଶ୍ରୁତିର ବିଧାନ ଅନୁସାରେ ମଧ ଏହା ସିଦ୍ଧ ହେଉଛି ।।୬୨

» ସମାହାରାତ୍ ।।୬୩।।

କର୍ମମାନଙ୍କର ସମାହାର ବତାଯାଇଛି, ଏଣୁ ତାଙ୍କର ଆଶ୍ରିତ ଉପାସନାମାନଙ୍କର ମଧ୍ୟ ସମାହାର ଉଚିତ ଅଟେ ।।୬୩

» **ଗୁଣସାଧାରଣ୍ୟଶ୍ରୁତେଶ୍ଚ ।।୬୪।।**

ଗୁଣମାନଙ୍କର ସାଧାରଣତା ପ୍ରକାଶ କରୁଥିବା ଶ୍ରୁତି ସାହାଯ୍ୟରେ ମଧ୍ୟ ଏହିକଥା ସିଦ୍ଧ ହେଉଛି ।।୬୪

» **ନ ବା ତତ୍ସହଭାବାଶ୍ରୁତେଃ ।।୬୫।।**

କିନ୍ତୁ ସେହି ସେହି ଉପାସନାମାନଙ୍କୁ ଏକତ୍ରିତକରି ବତାଉଥିବା ଶ୍ରୁତି ନାହିଁ, ଏଣୁ ଉପାସନାମାନଙ୍କର ସମାହାର ସିଦ୍ଧ ହେଉନାହିଁ ।।୬୫

» **ଦର୍ଶନାଚ୍ଚ ।।୬୬।।**

ଶ୍ରୁତିରେ ଉପାସନାମାନଙ୍କର ସମାହାର ନ ହୋଇଥିବା ଦେଖିବାକୁ ମିଳେ, ଏଣୁ ସେମାନଙ୍କର ସମାହାର ସିଦ୍ଧ ହୋଇ ନ ପାରେ ।।୬୬

ଇତି ମହର୍ଷିବ୍ୟାସବିରଚିତେ ବ୍ରହ୍ମସୂତ୍ରେ
ତୃତୀୟାଧ୍ୟାୟସ୍ୟ ତୃତୀୟଃ ପାଦଃ ।।୩।।

# ଚତୁର୍ଥ ପାଦ

ତୃତୀୟପାଦରେ ପରମାତ୍ମାଙ୍କ ପ୍ରାପ୍ତି ଉପାୟଭୂତ ଭିନ୍ନ ଭିନ୍ନ ବିଦ୍ୟାମାନଙ୍କ ବିଷୟରେ ପ୍ରତୀତ ହେଉଥିବା ବିରୋଧମାନଙ୍କୁ ଦୂର କରାଯାଇଛି ଏବଂ ସେହି ବିଦ୍ୟାମାନଙ୍କ ମଧ୍ୟରୁ କୌଣସି ଏକ ବିଦ୍ୟାରେ କୌଣସି ଏକ ଗୁଣ ଅନ୍ୟ ବିଦ୍ୟାରେ ଗ୍ରହଣ କରାଯାଇପାରେ ଆଉ କେଉଁଠି କରାଯାଇପାରେ ନାହିଁ, ତାହା ଅମୀମାଂସିତ ହୋଇ ରହିଛି । ଏହି ବିଦ୍ୟାମାନଙ୍କର ଭିନ୍ନ ଭିନ୍ନ ଭାବେ ଅନୁଷ୍ଠାନ କରିବା ଉଚିତ ଅବା ଏମାନଙ୍କ ମଧ୍ୟରେ କୌଣସିଟିର ଏକତ୍ରିତ କରାଯାଇପାରେ ଇତ୍ୟାଦି ବିଷୟମାନଙ୍କ ଉପରେ ବିଚାରକରି ସିଦ୍ଧାନ୍ତର ପ୍ରତିପାଦନ କରାଯାଇଛି ।

ଏବେ ବ୍ରହ୍ମଜ୍ଞାନ ପରମାତ୍ମାଙ୍କର ପ୍ରାପ୍ତିର ସ୍ୱତନ୍ତ୍ର ସାଧନା ଅଟେ କି ନାହିଁ ? ଆଉ ତାହାର ଅନ୍ତରଙ୍ଗ ସାଧନ କିଏ କିଏ ଅଟନ୍ତି ଆଉ ବହିରଙ୍ଗ କିଏ କିଏ ଅଟନ୍ତି ? ଏ ସମସ୍ତ ବିଷୟ ଉପରେ ବିଚାରକରି ସିଦ୍ଧାନ୍ତର ପ୍ରତିପାଦନ କରିବାପାଇଁ ଚତୁର୍ଥପାଦ ଆରମ୍ଭ କରାଯାଇଛି । ଏଠାରେ ପ୍ରଥମେ ପରମାତ୍ମାଙ୍କର ପ୍ରାପ୍ତିରୂପ ପୁରୁଷାର୍ଥର ସିଦ୍ଧି କେବଳ ଜ୍ଞାନ ସାହାଯ୍ୟରେ ହୋଇଥାଏ ନାଁ କର୍ମାଦିର ସମାହାରରେ ହୋଇଥାଏ ? ଏହା ଉପରେ ମଧ୍ୟ ବିଚାର ଆରମ୍ଭ କରିବାପାଇଁ ବେଦବ୍ୟାସ ନିଜର ନିର୍ଣ୍ଣିତ ମତକୁ ଏଠାରେ ପ୍ରତିପାଦନ କରିଛନ୍ତି --

- ପୁରୁଷାର୍ଥାଧିକରଣମ୍ ।।ସୂ.୧-୧୭।।

» ପୁରୁଷାର୍ଥୋଽତଃଶବ୍ଦାଦିତି ବାଦରାୟଣଃ ।।୧।।

ପରବ୍ରହ୍ମ ପ୍ରାପ୍ତରୂପ ପୁରୁଷାର୍ଥର ସିଦ୍ଧି ଏହାଦ୍ୱାରା (ଅର୍ଥାତ୍ ବ୍ରହ୍ମଜ୍ଞାନ ଦ୍ୱାରା) ହୋଇଥାଏ । କାହିଁକି ନାଁ ଶବ୍ଦ ଶ୍ରୁତିବଚନ ଏହା ସିଦ୍ଧ କରୁଛି, ଯାହାକି ବାଦରାୟଣ କହନ୍ତି ।।୧

» ଶେଷତ୍ୱାତ୍ପୁରୁଷାର୍ଥବାଦୋ ଯଥାନ୍ୟେଷ୍ୱିତି ଜୈମିନିଃ ।।୨।।

କର୍ମର ଅଙ୍ଗ ହୋଇଥିବା କାରଣରୁ ବ୍ରହ୍ମବିଦ୍ୟାକୁ ପୁରୁଷାର୍ଥର କାରଣ ବତାଇବା ଅର୍ଥବାଦ ମାତ୍ର ଅଟେ, ଯେଉଁଭଳି ଯଜ୍ଞର ଅନ୍ୟ ଅଙ୍ଗରେ ଫଳଶ୍ରୁତି ଅର୍ଥବାଦ ଗ୍ରହଣ କରାଯାଏ, ଏହା ଆଚାର୍ଯ୍ୟ ଜୈମିନୀଙ୍କର ମତ ଅଟେ ।।୨

» ଆଚାରଦର୍ଶନାତ୍ ।।୩।।

ଶ୍ରେଷ୍ଠ ପୁରୁଷମାନଙ୍କର ଆଚାର ଦେଖିବା ଦ୍ୱାରା ଏହା ସିଦ୍ଧ ହେଉଛି କି, ବିଦ୍ୟା କର୍ମର ଅଙ୍ଗ ଅଟେ ।।୩

» ତଚ୍ଛ୍ରୁତେଃ ।।୪।।

ଶ୍ରୁତିରେ ମଧ ଏହି କଥା ସିଦ୍ଧ ହେଉଛି ।।୪

» ସମନ୍ୱାରମ୍ଭଣାତ୍ ।।୫।।

ବିଦ୍ୟା ଏବଂ କର୍ମ ଉଭୟେ ଜୀବାତ୍ମାଙ୍କ ସହିତ ଗମନ କରିଥାନ୍ତି । ଏହି କଥନ ଥିବାରୁ ଏହା ସିଦ୍ଧ ହେଉଛି ।।୫

» ତଦ୍ୱତୋ ବିଧାନାତ୍ ।।୬।।

ଆତ୍ମଜ୍ଞାନଯୁକ୍ତ ଅଧିକାରୀଙ୍କ ପାଇଁ କର୍ମର ବିଧାନ ହୋଇଥିବା କାରଣରୁ ଏହା ସିଦ୍ଧ ହେଉଛି ।।୬

» ନିୟମାଚ୍ଚ ।।୭।।

ଶ୍ରୁତିରେ ନିୟମିତ ଭାବେ ଏହା ପାଳନ କରାଯାଉଥିବା କାରଣରୁ କର୍ମ ଅବଶ୍ୟ କର୍ତ୍ତବ୍ୟ ବୋଲାଏ । ଅତଃ ବିଦ୍ୟା କର୍ମର ଅଙ୍ଗ ଅଟେ, ଏହା ସିଦ୍ଧ ହେଉଛି ।।୭

» ଅଧିକୋପଦେଶାତ୍ତୁ ବାଦରାୟଣସ୍ୟୈବଂ ତଦ୍ଦର୍ଶନାତ୍ ।।୮।।

କିନ୍ତୁ ଶ୍ରୁତିରେ କର୍ମମାନଙ୍କ ଅପେକ୍ଷା ବ୍ରହ୍ମବିଦ୍ୟା ମାହାତ୍ମ୍ୟର କଥନ ଅଧିକ ହୋଇଥିବାରୁ ବ୍ୟାସଦେବଙ୍କର ମତ ଯେଉଁଭଳି ପ୍ରଥମ ସୂତ୍ରରେ ବର୍ଣ୍ଣିତ, ସେହିଭଳି ଅଟେ । କାହିଁକି ନାଁ ଶ୍ରୁତିରେ ବିଦ୍ୟାର ଆଧିକ୍ୟତା ଦେଖାଯାଇଛି ।।୮

» ତୁଲ୍ୟନ୍ତୁ ଦର୍ଶନମ୍ ।।୯।।

ଆଚାରର ଦର୍ଶନ ତ ସମାନ ଅଟେ ଅତଃ ତାହା ସାହାଯ୍ୟରେ ବିଦ୍ୟା କର୍ମର ଅଙ୍ଗ ବୋଧହୁଏ, ଏହା ସିଦ୍ଧ ହେଉନାହିଁ ।।୯

» ଅସାର୍ବତ୍ରିକୀ ।।୧୦।।

ଉକ୍ତ ଶ୍ରୁତି ସର୍ବତ୍ର ସମ୍ବନ୍ଧ ରକ୍ଷାକାରୀ ହୁଏନାହିଁ-- ଏକଦେଶୀୟ ଅଟେ ।।୧୦

» ବିଭାଗଃ ଶତବତ୍ ।।୧୧।।

ଏକ ଶତ ମୁଦ୍ରାର ବିଭାଗ ଭଳି ସେହି ଶ୍ରୁତିରେ କୁହାଯାଇଥିବା ବିଦ୍ୟା-କର୍ମର ବିଭାଗ ଅଧିକାରୀ ଭେଦରେ ବୁଝିନେବା ଦରକାର ।।୧୧

» ଅଧ୍ୟୟନମାତ୍ରବତଃ ।।୧୨।।

ବିଦ୍ୟା ଅଧ୍ୟୟନକାରୀଙ୍କ ପାଇଁ(ଅନୁଷ୍ଠାନକାରୀଙ୍କ ସଦୃଶ ନୁହେଁ) ଏହା କଥିତ ହୋଇଛି ।।୧୨

» ନାବିଶେଷାତ୍ ।।୧୩।।

ସେହି ଶ୍ରୁତି ବିଶେଷରୂପେ ବିଦ୍ୱାନଙ୍କ ପାଇଁ କୁହାଯାଇନାହିଁ, ଏଣୁ ଜ୍ଞାନ ସହିତ ତାହାର ଏକାକାର ସିଦ୍ଧ ହେଉନାହିଁ ।।୧୩

» ସ୍ତୁତୟେନୁମତିର୍ବା ।।୧୪।।

ଅଥବା ଏଭଳି ବୁଝିବାକୁ ହେବ କି ବିଦ୍ୟାର ସ୍ତୁତି ପାଇଁ ସମ୍ମତି ମାତ୍ର ରହିଛି ।।୧୪

» କାମକାରେଣ ଚୈକେ ।।୧୫।।

ଏହା ବ୍ୟତୀତ କୌଣସି ଏକ ବିଦ୍ୱାନ ସ୍ୱେଚ୍ଛାପୂର୍ବକ କର୍ମମାନଙ୍କର ତ୍ୟାଗ କରିଦିଅନ୍ତି, ଏଣୁ ମଧ ବିଦ୍ୟା କର୍ମମାନଙ୍କର ଅଙ୍ଗ ନୁହଁନ୍ତି ।।୧୫

» ଉପମର୍ଦ୍ଦଂ ଚ ।।୧୬।।

ଏହା ବ୍ୟତୀତ ବ୍ରହ୍ମବିଦ୍ୟା ସାହାଯ୍ୟରେ କର୍ମମାନଙ୍କର ସର୍ବାଦୌ ନାଶଯିବା କଥା କୁହାଯାଇଛି, ଯାହାଦ୍ୱାରା ପୂର୍ବୋକ୍ତ କଥା ସିଦ୍ଧ ହେଉଛି ।।୧୬

» ଊର୍ଦ୍ଧ୍ୱରେସ୍ତୁ ଚ ଶବ୍ଦେ ହି ।।୧୭।।

ଯେଉଁଥିରେ ବୀର୍ଯ୍ୟକୁ ସୁରକ୍ଷିତ ରଖିବାର ବିଧାନ ରହିଛି, ସେହିଭଳି ଆଶ୍ରମ ତ୍ରୟରେ ମଧ ବ୍ରହ୍ମବିଦ୍ୟାର ଅଧିକାର ରହିଛି କାହିଁକି ନାଁ ବେଦରେ ଏଭଳି ମଧ କୁହାଯାଇଛି । ଏଣୁ ବ୍ରହ୍ମବିଦ୍ୟା କର୍ମର ଅଙ୍ଗ ନୁହେଁ ।।୧୭

• ପରାମର୍ଶାଧିକରଣମ୍ । ସୂ.୧୮-୨୦

» ପରାମର୍ଶଂ ଜୈମେନିର ଚୋଦନା ଚାପବଦତି ହି ।।୧୮।।

ଆଚାର୍ଯ୍ୟ ଜୈମିନୀ ଉକ୍ତ ଶ୍ରୁତିରେ ସନ୍ନ୍ୟାସାଶ୍ରମର ଅନୁବାଦ ମାତ୍ର ମାନନ୍ତି, ବିଧି ନୁହେଁ କାହିଁକି ନାଁ ସେଥିରେ ବିଧିସୂଚକ କ୍ରିୟାପଦର ପ୍ରୟୋଗ ନାହିଁ । ଏହା ବ୍ୟତୀତ ଶ୍ରୁତି ସନ୍ନ୍ୟାସର ଅପବାଦ ବା ନିଷେଧ କରିଛନ୍ତି ।।୧୮

» ଅନୁଷ୍ଠେୟଂ ବାଦରାୟଣଃ ସାମ୍ୟଶ୍ରୁତେଃ ।।୧୯।।

ବ୍ୟାସଦେବ କହନ୍ତି କି, ଗୃହସ୍ଥମାନଙ୍କ ଭଳି ଅନ୍ୟ ଆଶ୍ରମମାନଙ୍କରେ ଧର୍ମର ଅନୁଷ୍ଠାନ ମଧ୍ୟ କର୍ତ୍ତବ୍ୟ ଅଟେ: କାହିଁକି ନାଁ ଶ୍ରୁତିରେ ସମସ୍ତ ଆଶ୍ରମମାନଙ୍କର ଏବଂ ସମସ୍ତ ଧର୍ମମାନଙ୍କର କର୍ତ୍ତବ୍ୟର ସମାନରୂପେ ପ୍ରତିପାଦନ କରାଯାଇଛି ।।୧୯

» ବିଧିର୍ବା ଧାରଣବତ୍ ।।୨୦।।

ଅଥବା ଉକ୍ତ ମନ୍ତ୍ରରେ ଅନ୍ୟ ଆଶ୍ରମମାନଙ୍କର ବିଧି ମାନିନେବା ଦରକାର, ଅନୁବାଦ ନୁହେଁ: ଯେଉଁଭଳି ସମିଧା-ଧାରଣ-ସମ୍ବନ୍ଧୀ ବାକ୍ୟରେ 'ଉପରେ ଧାରଣ'ର କ୍ରିୟାମାନଙ୍କର ଅନୁବାଦ ନ ମାନି ବିଧି ହିଁ ମାନିବାକୁ ହୁଏ ।।୨୦

• ସ୍ତୁତିମାତ୍ରାଧିକରଣମ୍ । ସୂ.୨୧-୨୨

» ସ୍ତୁତିମାତ୍ରମୁପାଦାନାଦିତି ଚେନ୍ନାପୂର୍ବତ୍ୱାତ୍ ।।୨୧।।

ଯଦି କୁହ ଉଦ୍ଗୀଥ ଆଦି ଉପାସନାମାନଙ୍କରେ ଯାହା ତାଙ୍କର ମହିମାସୂଚକ ବଚନ ରହିଛି, ସେଥିରେ କର୍ମର ଅଙ୍ଗଭୂତ ଉଦ୍ଗୀଥ ଆଦିଙ୍କୁ ନେଇ ସେହିଭଳି ବର୍ଣ୍ଣନ କରାଯାଇଛି, ଏଣୁ ସେସବୁ କେବଳ ତାଙ୍କର ସ୍ତୁତି ମାତ୍ର ଅଟେ, ତେବେ ଏଭଳି କଥା ନୁହେଁ କାହିଁକି ନାଁ ସେହି ଉପାସନାମାନେ ଏବଂ ସେମାନଙ୍କର ରସତମତ୍ୱ ଆଦି ଗୁଣ ଅପୂର୍ବ ଅଟନ୍ତି ।।୨୧

» ଭାବଶବ୍ଦାଚ୍ଚ ।।୨୨।।

ଏହା ବ୍ୟତୀତ ସେହି ପ୍ରକରଣରେ ଏହି ପ୍ରକାର ଉପାସନା କରିବା ଦରକାର ଇତ୍ୟାଦି ବିଧିବାଚକ ଶବ୍ଦମାନଙ୍କର ସ୍ପଷ୍ଟ ପ୍ରୟୋଗ ହୋଇଥିବା କାରଣରୁ ମଧ୍ୟ ଏହିକଥା ସିଦ୍ଧ ହେଉଛି ।।୨୨

• ପାରିପ୍ଲବାଧିକରଣମ୍ । ସୂ.୨୩-୨୪

» ପାରିପ୍ଲବାର୍ଥା ଇତି ଚେନ୍ନ ବିଶେଷିତତ୍ତ୍ୱାତ୍ ।। ୨୩।।

ଯଦି କୁହ ଉପନିଷଦମାନଙ୍କରେ ବର୍ଣ୍ଣିତ ଆଖ୍ୟାୟିକାଗଣ ପାରିପ୍ଲବ କର୍ମପାଇଁ ହିଁ ଅଟନ୍ତି, ତେବେ ତାହା ଠିକ୍ ନୁହେଁ କାହିଁକି ନାଁ ପାରିପ୍ଲବ କର୍ମରେ ଆଖ୍ୟାୟିକାମାନଙ୍କର ଗ୍ରହଣ ବିଶେଷ ରୂପେ କରାଯାଇନାହିଁ ।।୨୩

» ତଥା ଚୈକବାକ୍ୟତୋପବନ୍ଧାତ୍ ।।୨୪।।

ଏହିଭଳି ସେହି ଆଖ୍ୟାୟିକାମାନଙ୍କୁ ପାରିପ୍ଲବାର୍ଥକ ନ ମାନି ବିଦ୍ୟାର ଅଙ୍ଗ ଭାବରେ ମାନିନେବା ଦରକାର କାହିଁକି ନାଁ ସେହି ଉପାଖ୍ୟାନମାନଙ୍କର ସେହିଠାରେ କୁହାଯାଇଥିବା ବିଦ୍ୟାମାନଙ୍କ ସହିତ ଏକବାକ୍ୟତା ପରିଦୃଷ୍ଟ ହୁଏ ।।୨୪

• ଅଗ୍ନୀନ୍ଧନାଧଧିକରଣମ୍ । ସୂ.୨୫

» ଅତଏବ ଚାଗ୍ନୀନ୍ଧନାଦ୍ୟନପେକ୍ଷା ।।୨୫।।

ତଥା ଏଥିପାଇଁ ଏହି ବ୍ରହ୍ମବିଦ୍ୟାରୂପ ଯଜ୍ଞରେ ଅଗ୍ନି, ସମିଧା, ଘୃତ ଆଦି ପଦାର୍ଥମାନଙ୍କର ଆବଶ୍ୟକତା ନାହିଁ ।।୨୫

• ସର୍ବାପେକ୍ଷାଧିକରଣମ୍ । ସୂ.୨୬-୨୬

» ସର୍ବାପେକ୍ଷା ଚ ଯଜ୍ଞାଦିଶ୍ରୁତେରଶ୍ୱବତ୍ ।।୨୬।।

ଏହା ବ୍ୟତୀତ ବିଦ୍ୟାର ଉତ୍ପତ୍ତି ପାଇଁ ସମସ୍ତ ବର୍ଣ୍ଣାଶ୍ରମୋଚିତ କର୍ମମାନଙ୍କର ଆବଶ୍ୟକତା ରହିଛି କାହିଁକି ନାଁ ଯଜ୍ଞାଦି କର୍ମମାନଙ୍କୁ ବ୍ରହ୍ମବିଦ୍ୟାର କାରଣ ଶ୍ରୁତି ହିଁ ବତାନ୍ତି: ଯେଉଁଭଳି ଘୋଡ଼ାକୁ ଯୋଗ୍ୟତାନୁସାରେ ସବାରୀ ବାହନ କାମରେ ବ୍ୟବହାର କରାଯାଏ, ପ୍ରାସାଦ ଉପରେ ଚଢ଼ିବା ପାଇଁ ନୁହେଁ: ସେହିଭଳି କର୍ମ ବିଦ୍ୟାର ଉତ୍ପତ୍ତି ପାଇଁ ଅପେକ୍ଷିତ ଅଟେ ମୋକ୍ଷପାଇଁ ନୁହେଁ ।।୨୬

» ଶମଦମାଦ୍ୟୁପେତଃ ସ୍ୟାତ୍ତଥାऽପି ତୁ ତଦ୍‌ବିଧେସ୍ତଦଙ୍ଗତୟା ତେଷାମବଶ୍ୟାନୁଷ୍ଠେୟତ୍ୱାତ୍ ।।୨୭।।

ଅନ୍ୟ କର୍ମ ଆବଶ୍ୟକ ନ ହୋଇ ମଧ ସାଧକକୁ ଶମ, ଦମ, ତିତିକ୍ଷା ଆଦି ଗୁଣମାନଙ୍କରେ ସମ୍ପନ୍ନ ହେବା ଦରକାର କାହିଁକି ନାଁ ସେହି ବ୍ରହ୍ମବିଦ୍ୟାର

ଅଙ୍ଗରୂପେ ସେହି ଶମ-ଦମାଦିର ବିଧାନ ହୋଇଥିବା କାରଣରୁ ତାଙ୍କର ଅନୁଷ୍ଠାନ ଅବଶ୍ୟ କର୍ତ୍ତବ୍ୟ ଅଟେ ।।୨୭

- ସର୍ବାନ୍ନାନୁମତ୍ୟଧିକରଣମ୍ । ସୂ.୨୮-୩୧

» ସର୍ବାନ୍ନାନୁମତିଶ୍ଚ ପ୍ରାଣାତ୍ୟୟେ ତଦ୍ଦର୍ଶନାତ୍ ।।୨୮।।

ସବୁପ୍ରକାର ଅନ୍ନ ଭକ୍ଷଣ କରିବାର ଅନୁମତି ତ ଅନ୍ନ ବିନା ପ୍ରାଣ ନ ରହିବାର ସମ୍ଭାବନାରୁ ହୋଇପାରେ, ସବୁବେଳେ ନୁହେଁ କାରଣ ଶ୍ରୁତିରେ ସେହିଭଳି ଆଚାର ଦେଖାଯାଇଛି ।।୨୮

» ଅବାଧାଚ୍ଚ ।।୨୯।।

ଅନ୍ୟ ଶ୍ରୁତିର ବାଧା ମଧ ନ ହେବା ଉଚିତ, ଏହି କାରଣରୁ ମଧ ଏହା ସିଦ୍ଧ ହେଉଛି କି, ଆପଦ୍‌କାଳ ବ୍ୟତୀତ ଅନ୍ୟ ପରିସ୍ଥିତିମାନଙ୍କରେ ଆଚାରର ତ୍ୟାଗ କରିବା ଅନୁଚିତ ।।୨୯

» ଅପି ଚ ସ୍ମର୍ଯ୍ୟତେ ।।୩୦।।

ଏହା ବ୍ୟତୀତ ସ୍ମୃତି ମଧ ଏହି କଥାକୁ ସମର୍ଥନ କରିଛନ୍ତି ।।୩୦

» ଶବ୍ଦାଶ୍ଚାତୋଽକାମକାରେ ।।୩୧।।

ଇଚ୍ଛାନୁସାରେ ଅଭକ୍ଷ ଭୋଜନର ନିଷେଧ ପାଇଁ ଶ୍ରୁତି ପ୍ରମାଣ ମଧ ରହିଛି, ଏଣୁ ପ୍ରାଣ ସଙ୍କଟ ସ୍ଥିତି ନ ଆସିଲେ ନିଷିଦ୍ଧ ଅନ୍ନ-ଜଳ ଆଦିର ଗ୍ରହଣ କରିବା ଅନୁଚିତ ।।୩୧

- ଆଶ୍ରମକର୍ମାଧିକରଣମ୍ । ସୂ.୩୨-୩୫

» ବିହିତତ୍ୱାଚ୍ଚାଶ୍ରମକର୍ମାପି ।।୩୨।।

ଶାସ୍ତ୍ର ବିହିତ ହୋଇଥିବା କାରଣରୁ ଆଶ୍ରମ ସମ୍ବନ୍ଧିତ କର୍ମମାନଙ୍କର ମଧ ଅନୁଷ୍ଠାନ କରିବା ଉଚିତ ।।୩୨

» ସହକାରିତ୍ୱେନ ଚ ।।୩୩।।

ଏ ସାଧନରେ ସହାୟକ ହୋଇଥିବା କାରଣରୁ ମଧ ସେଗୁଡ଼ିକର ଅନୁଷ୍ଠାନ ଲୋକସଂଗ୍ରହ ନିମିତ୍ତ କରିବା ଦରକାର ।।୩୩

» **ସର୍ବଥାଽପି ତ ଏବୋଭୟଲିଙ୍ଗାତ୍ ।।୩୪।।**

କୌଣସି କାରଣରୁ କଠିନତା ପ୍ରାପ୍ତହେବା ପରେ ମଧ ସେ ଭକ୍ତିସମ୍ବନ୍ଧିତ କର୍ମ ଅଥବା ଭାଗବତ ଧର୍ମ ସବୁପ୍ରକାରେ ଆଚରଣୀୟ ଅଟେ କାହିଁକି ନାଁ ଶ୍ରୁତି ଓ ସ୍ମୃତି ଉଭୟର ନିଶ୍ଚୟାତ୍ମକ ବର୍ଣ୍ଣନ ଲିଙ୍ଗ(ଲକ୍ଷଣ)ରୁ ଏହା ସିଦ୍ଧ ହେଉଛି ।।୩୪

» **ଅନଭିଭବଂ ଚ ଦର୍ଶୟତି ।।୩୫।।**

ଶ୍ରୁତି ଏଗୁଡ଼ିକର ଅନୁଷ୍ଠାନକାରୀଙ୍କୁ ପାପ ଅଭିଭୂତ ନ ହେବା ପାଇଁ ବତାଇଛନ୍ତି ଅର୍ଥାତ୍ ଏଥିରୁ ଏହା ସିଦ୍ଧ ହେଉଛି କି ଏହାର ଅନୁଷ୍ଠାନ କରିବା ଦ୍ୱାରା ପାପ ଲାଗେନାହିଁ, ତେଣୁ କରଣୀୟ ।।୩୫

• **ବିଧୁରାଧିକରଣମ୍ । ସୂ.୩୬-୩୯**

» **ଅନ୍ତରା ଚାପି ତୁ ତଦ୍ଦୃଷ୍ଟେଃ ।।୩୬।।**

ଏହା ବ୍ୟତୀତ ଆଶ୍ରମଧର୍ମର ଅଭାବରେ ମଧ କେବଳ ଉପାସନା ବିଷୟକ ଅନୁଷ୍ଠାନ ଦ୍ୱାରା ପରମାତ୍ମାଙ୍କର ପ୍ରାପ୍ତି ହୋଇପାରେ କାହିଁକି ନାଁ ଶ୍ରୁତିରେ ସେହିଭଳି ବିଧାନ ଦେଖାଯାଇଛି ।।୩୬

» **ଅପି ଚ ସ୍ମର୍ଯ୍ୟତେ ।।୩୭।।**

ଏହା ବ୍ୟତୀତ ଶ୍ରୁତିମାନଙ୍କରେ ମଧ ଏହିକଥା ସ୍ପଷ୍ଟଭାବେ କୁହାଯାଇଛି ।।୩୭

» **ବିଶେଷାନୁଗ୍ରହଶ୍ଚ ।।୩୮।।**

ଭଗବାନଙ୍କର ଭକ୍ତିସମ୍ବନ୍ଧୀ ଧର୍ମର ପାଳନ କରିବା ଦ୍ୱାରା ଭଗବାନଙ୍କର ବିଶେଷ ଅନୁଗ୍ରହ ହୋଇଥାଏ ।।୩୮

» **ଅତସ୍ତ୍ୱିତରଜ୍ଜ୍ୟାୟୋ ଲିଙ୍ଗାଚ୍ଚ ।।୩୯।।**

ପୂର୍ବ ନିର୍ଦ୍ଦେଶିତ ସମସ୍ତ କାରଣରୁ ଅନ୍ୟ ସମସ୍ତ ଧର୍ମ ଅପେକ୍ଷା ଭଗବାନଙ୍କର ଭକ୍ତି ବିଷୟକ ଧର୍ମ ଶ୍ରେଷ୍ଠ ଅଟେ । ତଦ୍ଭିନ୍ନ ଅନ୍ୟ ଲକ୍ଷଣମାନଙ୍କ ଯୋଗୁଁ ଅର୍ଥାତ୍ ସ୍ମୃତି ପ୍ରମାଣରୁ ମଧ ଏହା ସିଦ୍ଧ ହେଉଛି ।।୩୯

• **ତଦ୍ଭୂତାଧିକରଣମ୍ । ସୂ.୪୦**

» **ତଦ୍ଭୂତସ୍ୟ ତୁ ନାତଦ୍ଭାବୋ ଜୈମିନେରପି ନିୟମାତଦ୍ରୂପାଭାବେଭ୍ୟଃ ।।୪୦**

ଉଚ୍ଚ ଆଶ୍ରମରେ ସ୍ଥିତ ମନୁଷ୍ୟର ତ ସେହିସ୍ଥାନ ତ୍ୟାଗକରି ପୂର୍ବ ଆଶ୍ରମକୁ ଲେଉଟି ଆସିବା ସମ୍ଭବନୁହେଁ ଅର୍ଥାତ୍ ହୋଇ ନ ପାରେ କାହିଁକି ନାଁ ଶାସ୍ତ୍ରରେ ପଛକୁ ଲେଉଟିବାର ବିଧାନ ନାହିଁ । ଶ୍ରୁତିରେ ଆଶ୍ରମ ବଦଳାଇବାର ଯେଉଁ କ୍ରମ କୁହାଯାଇଛି, ତାହାଦ୍ୱାରା ଏହା ବିପରୀତ ଅଟେ ଆଉ ତାହା ଉଚିତ ପ୍ରକାର ଶିଷ୍ଟାଚାର ମଧ ନୁହେଁ: ଏହା ଜୈମିନୀ ଋଷିଙ୍କର ସମ୍ମତି ମଧ ଅଟେ ।।୪୦

• ଅଧିକାରାଧିକରଣମ୍ ।। ସୂ. ୪୧-୪୨।।

» ନ ଚାଧିକାରିକମପି ପତନାନୁମାନାତ୍ତଦଯୋଗାତ୍ ।।୪୧।।

ଏହା ବ୍ୟତୀତ ପ୍ରାୟଶ୍ଚିତ୍ତର ଅଧିକାରୀ ଅନ୍ୟ ଆଶ୍ରମବାସୀଙ୍କ ପାଇଁ ଯେଉଁ ପ୍ରାୟଶ୍ଚିତ୍ତ ବତାଯାଇଛି ତାହା ମଧ ତାଙ୍କପାଇଁ ବିହିତ ନୁହେଁ କାହିଁକି ନାଁ ସ୍ମୃତିରେ ତାଙ୍କର ଅତ୍ୟନ୍ତ ବିରାଟ ପତନ ହେବାକଥା ସ୍ୱୀକୃତ ହୋଇଛି, ଏଣୁ ସେ ପ୍ରାୟଶ୍ଚିତ୍ତର ଯୋଗ୍ୟ ହୋଇ ରହିଲେନାହିଁ ।।୪୧

» ଉପପୂର୍ବମପିତ୍ୱେକେ ଭାବମଶନବତ୍ତଦୁକ୍ତମ୍ ।।୪୨।।

କୌଣସି ଏକ ଆଚାର୍ଯ୍ୟ ତ ଏହାକୁ ଉପପାତକ ବୋଲି ମାନନ୍ତି, ଏଣୁ ଭୋଜନର ନିୟମଭଙ୍ଗକୁ ପ୍ରାୟଶ୍ଚିତ୍ତ ଭଳି ଏଇଥିପାଇଁ ପ୍ରାୟଶ୍ଚିତ୍ତ ଭାବେ ମାନନ୍ତି, ଏହିକଥା ଶାସ୍ତ୍ରରେ ମଧ କୁହାଯାଇଛି ।।୪୨

• ବହିରଧିକରଣମ୍ ।।ସୂ.୪୩।।

» ବହିସ୍ତୁଭୟଥାଽପି ସ୍ମୃତେରାଚାରାଚ୍ଚ ।।୪୩।।

କିନ୍ତୁ ଉଭୟ ପ୍ରକାରେ ସେହି ଅଧିକାରରୁ ବହିଷ୍କୃତ ଅଟନ୍ତି କାହିଁକି ନାଁ ସ୍ମୃତି ପ୍ରମାଣରେ ଏବଂ ଶିଷ୍ଟାଚାରରେ ଏହିକଥା ସିଦ୍ଧ ହେଉଛି ।।୪୩

• ସ୍ୱାମ୍ୟଧିକରଣମ୍ ।। ସୂ.୪୪-୪୬।।

» ସ୍ୱାମିନଃ ଫଳଶ୍ରୁତେରିତ୍ୟାତ୍ରେୟଃ ।।୪୪।।

ସେହି ଉପାସନାରେ ଯଜମାନର କର୍ତ୍ତାପଣ ରହିଛି, ଏହିଭଳି ଆତ୍ରେୟଋଷି ମାନନ୍ତି କାହିଁକି ନାଁ ଶ୍ରୁତିରେ ଯଜମାନଙ୍କ ପାଇଁ ଫଳ ବର୍ଣ୍ଣିତ ହୋଇଛି ।।୪୪

» ଆର୍ତ୍ୱିଜ୍ୟମିତ୍ୟୌଡୁଲୋମିସ୍ତସ୍ମୈ ହି ପରିକ୍ରୀୟତେ ।।୪୫।।

କର୍ତ୍ତାପଣ ଋତ୍ୱିକ୍ଙ୍କର ଅଟେ ଏଭଳି ଔଡୁଲୋମୀ ଆଚାର୍ଯ୍ୟ ମାନନ୍ତି କାହିଁକି ନାଁ

ସେହି କର୍ମ ପାଇଁ ସେହି ଋତ୍ୱିକ୍ ଯଜମାନ ଦ୍ୱାରା ଧନଦାନାଦି ହୋଇ ବରଣ କରାଯାଇଛନ୍ତି ।।୪୫

» ଶ୍ରୁତେଶ୍ଚ ।।୪୬।।

ଶ୍ରୁତିପ୍ରମାଣରେ ମଧ୍ୟ ଔଡୁଲୋମୀଙ୍କର ଏହି ମତ ପ୍ରଯୁଜ୍ୟ ସିଦ୍ଧ ହେଉଛି ।।୪୬

• ସହକାର୍ଯ୍ୟନ୍ତରବିଧ୍ୟଧିକରଣମ୍ ।। ସୂ. ୪୭-୪୯।।

» ସହକାର୍ଯ୍ୟନ୍ତରବିଧିଃ ପକ୍ଷେଣ ତୃତୀୟଂ ତଦ୍ୱତୋ ବିଧ୍ୟାଦିବତ୍ ।।୪୭।।

ବ୍ରହ୍ମବିଦ୍ୟା ସମ୍ବନ୍ଧୀ ସାଧନଯୁକ୍ତ ସାଧକଙ୍କ ପାଇଁ ବାଳକପଣ ଓ ପାଣ୍ଡିତ୍ୟର ସହିତ କୁହାଯାଇଥିବା ଯେଉଁ ତୃତୀୟ ମୌନସାଧନା ରହିଛି, ତାହା ବିଧେୟ ଅଟେ କାହିଁକି ନାଁ ତାଙ୍କର ଅନ୍ୟ ସହକାରୀ ସାଧନରୂପେ ସେଗୁଡ଼ିକର ବିଧାନ ରହିଛି । ଅନ୍ୟ ସ୍ଥଳରେ କୁହାଯାଇଥିବା ବିଧିବାକ୍ୟମାନଙ୍କ ଭଳି ଗୋଟିଏ ପକ୍ଷକୁ ନେଇ ଏହା ମଧ୍ୟ ବିଧେୟ ହୋଇଯାଏ ।।୪୭

» କୃତ୍ସ୍ନଭାବାତ୍ତୁ ଗୃହିଣୋପସଂହାରଃ ।।୪୮।।

ଗୃହସ୍ଥ ଆଶ୍ରମରେ ସମ୍ପୂର୍ଣ୍ଣ ଆଶ୍ରମର ଭାବ ରହିଛି, ଏଣୁ ଏହି ପ୍ରକରଣରେ ଗୃହସ୍ଥାଶ୍ରମ ସହିତ ବ୍ରହ୍ମବିଦ୍ୟା ପ୍ରକରଣର ମଧ୍ୟ ଉପସଂହାର କରାଯାଇଛି ।।୪୮

» ମୌନବଦିତରେଷାମପ୍ୟୁପଦେଶାତ୍ ।।୪୯।।

ଅନ୍ୟ ଆଶ୍ରମବାସୀଙ୍କ ପାଇଁ ମଧ୍ୟ ମନନଶୀଳତା ଭଳି ବିଦ୍ୟା ଉପଯୋଗୀ ସମସ୍ତ ସାଧନକୁ ଉପଦେଶ ଭାବରେ ବର୍ଣ୍ଣିତ ହୋଇଥିବା କାରଣରୁ ସମସ୍ତ ଆଶ୍ରମରେ ବ୍ରହ୍ମବିଦ୍ୟାର ଅଧିକାର ସିଦ୍ଧ ହେଉଛି ।।୪୯

• ଅନାବିଷ୍କାରାଧିକରଣମ୍ ।।ସୂ. ୫୦।।

» ଅନାବିଷ୍କୁର୍ବନ୍ନନ୍ୱୟାତ୍ ।।୫୦।।

ସ୍ୱଗୁଣ ପ୍ରକଟ ନ କରି ବାଳକଭଳି ଦମ୍ଭ ଓ ଅଭିମାନାଦି ରହିତ ହେବ କାହିଁକି ନାଁ ଏହିଭଳି ଭାବର ବ୍ରହ୍ମବିଦ୍ୟାର ସହିତ ସମ୍ବନ୍ଧ ରହିଛି ।।୫୦

• ଐହିକାଧିକରଣମ୍ ।।ସୂ. ୫୧।।

» ଐହିକମପ୍ୟପ୍ରସ୍ତୁତପ୍ରତିବନ୍ଧେ ତଦ୍ଦର୍ଶନାତ୍ ।।୫୧।।

କୌଣସି ପ୍ରକାର ପ୍ରତିବନ୍ଧ ଉପସ୍ଥିତ ନ ହେବା ଫଳରେ ଏହି ଜନ୍ମରେ ଉକ୍ତଫଳ ପ୍ରାପ୍ତ ହୋଇପାରେ: ପ୍ରତିବନ୍ଧ ହେଲେ ଜନ୍ମାନ୍ତରରେ ମଧ ଏହା ହୋଇଥାଏ କାହିଁକି ନାଁ ଏହିକଥା ଶ୍ରୁତି ଓ ସ୍ମୃତିରେ ଦେଖାଯାଏ ।।୫୧

• ମୁକ୍ତିଫଳାଧିକରଣମ୍ ।। ସୂ: ୫୨।।

» ଏବଂ ମୁକ୍ତିଫଳାନିୟମସ୍ତଦବସ୍ଥାବଧୃତେସ୍ତଦବସ୍ଥାବଧୃତେଃ ।।୫୨।।

ଏହିଭଳି କୌଣସି ଏକ ଲୋକରେ ମୁକ୍ତିରୂପକ ଫଳ ପ୍ରାପ୍ତ ହେବାର ନିୟମ ନାହିଁ କାହିଁକି ନାଁ ତାହାର ଅବସ୍ଥା ନିଶ୍ଚିତ କରାଯାଇଛି, ତାହାର ଅବସ୍ଥା ନିଶ୍ଚିତ କରାଯାଇଛି । କଥନର ପୁନରାବୃତ୍ତି ଅଧ୍ୟାୟ ପରିସମାପ୍ତି ଘୋଷଣା କରୁଛି ।।୫୨

ଇତି ମହର୍ଷିବ୍ୟାସବିରଚିତେ ବ୍ରହ୍ମସୂତ୍ରେ
ତୃତୀୟାଧ୍ୟାୟସ୍ୟ ଚତୁର୍ଥଃ ପାଦଃ ।।୪।।

ତୃତୀୟୋଽଧ୍ୟାୟଃ ସମାପ୍ତଃ ।।

# ଚତୁର୍ଥ ଅଧ୍ୟାୟ

## ପ୍ରଥମ ପାଦ

*ତୃତୀୟ ଅଧ୍ୟାୟରେ ପରମାତ୍ମାଙ୍କର ପ୍ରାପ୍ତି ପାଇଁ ବିଭିନ୍ନ ପ୍ରକାର ସାଧନା ଦର୍ଶାଉଥିବା ଶ୍ରୁତି ସମ୍ପର୍କରେ ବିଚାର କରାଗଲା । ଅଧୁନା ଉକ୍ତ ଉପାସନାର ଫଳ ବିଷୟକ ଶ୍ରୁତି ସମ୍ପର୍କିତ ବିଚାର ବର୍ଣ୍ଣନା କରାଯାଉଛି । ତେଣୁ ଏହି ଅଧ୍ୟାୟକୁ ଫଳାଧ୍ୟାୟ ନାମକ ଚତୁର୍ଥ ଅଧ୍ୟାୟ ବୋଲି କୁହାଯାଇପାରେ ।*

*ଏଠାରେ ଜିଜ୍ଞାସା ଉତ୍ପନ୍ନ ହୁଏ କି, ପୂର୍ବୋକ୍ତ ଉପାସନାଗୁଡ଼ିକ ଗୁରୁଙ୍କ ଦ୍ୱାରା ଅଧ୍ୟୟନ କରିନେବା ମାତ୍ରକେ ଫଳ ପ୍ରଦାନ କରିବାକୁ ସମର୍ଥ ହୋଇଥାଏ କି ? ବାରମ୍ବାର ସେହି ସାଧନ ଗୁଡ଼ିକର ଅଭ୍ୟାସ କରିବା ଦ୍ୱାରା କି ପ୍ରକାର ପରିବର୍ତ୍ତନ ଘଟେ ? ସେ ସମ୍ପର୍କରେ ନିମ୍ନ ସୂତ୍ରଗୁଡ଼ିକର ବ୍ୟାଖ୍ୟାନ କରାଯାଇଛି --*

- ଆବୃତ୍ତ୍ୟାଧିକରଣମ୍ ।। ସୂ. ୧-୨।।

» ଆବୃତ୍ତିରସକୃଦୁପଦେଶାତ୍ ।।୧।।

ଅଧ୍ୟୟନ କରାଯାଇଥିବା ଉପାସନାର ଆବର୍ତ୍ତନ (ବାରମ୍ବାର ଅଭ୍ୟାସ) କରିନେବା ଦରକାର: କାହିଁକି ନାଁ ଶ୍ରୁତିରେ ଅନେକଥର ସେଥିପାଇଁ ଉପଦେଶ ପ୍ରଦାନ କରାଯାଇଛି ।।୧

» ଲିଙ୍ଗାଚ୍ଚ ।।୨।।

ସ୍ମୃତିରେ ବର୍ଣ୍ଣନରୂପ ଲିଙ୍ଗ (ପ୍ରମାଣ)ଦ୍ୱାରା ମଧ (ଏହିକଥା ସିଦ୍ଧ ହେଉଛି) ।୨।

- ଆତ୍ମତ୍ୱୋପାସନାଧିକରଣମ୍ ।।ସୂ. ୩।।

» **ଆତ୍ମେତି ତୂପଗଚ୍ଛନ୍ତି ଗ୍ରାହୟନ୍ତି ଚ ।।୩।।**

ତାହା ମୋର ଆତ୍ମା ଅଟେ : ଏହି ଭାବରୁ ହିଁ ଜ୍ଞାନୀଗଣ ତାଙ୍କୁ ଜାଣିଥାନ୍ତି ଅଥବା ପ୍ରାପ୍ତ କରିଥାନ୍ତି ଏବଂ ଏହିଭଳି ଗ୍ରହଣକରି ବୁଝାଇଥାନ୍ତି ।।୩।।

- **ପ୍ରତୀକାଧିକରଣମ୍ ।। ସୂ.୪।।**

» **ନ ପ୍ରତୀକେ ନ ହି ସଃ ।।୪।।**

ପ୍ରତୀକରେ ଆତ୍ମଭାବ କରିବା ଅନୁଚିତ କାହିଁକି ନାଁ ତାହା ଉପାସକର ଆତ୍ମା ନୁହେଁ ।।୪।।

- **ବ୍ରହ୍ମଦୃଷ୍ଟ୍ୟଧିକରଣମ୍ ।। ସୂ. ୫।।**

» **ବ୍ରହ୍ମଦୃଷ୍ଟିରୁତ୍କର୍ଷାତ୍ ।।୫।।**

ବ୍ରହ୍ମ ହିଁ ସର୍ବଶ୍ରେଷ୍ଠ ଅଟେ, ଏଣୁ ପ୍ରତୀକରେ ବ୍ରହ୍ମଦୃଷ୍ଟି କରିବା ଦରକାର (କାହିଁକି ନାଁ ନିକୃଷ୍ଟ ବସ୍ତୁରେ ହିଁ ଉତ୍କୃଷ୍ଟର ଭାବନା କରାଯାଇପାରେ) ।।୫।।

- **ଆଦିତ୍ୟାଦିମତ୍ୟଧିକରଣମ୍ ।।ସୂ.୬।।**

» **ଆଦିତ୍ୟାଦିମତୟଶ୍ଚାଙ୍ଗ ଉପପତ୍ତେଃ ।।୬।।**

ତଥା କର୍ମାଙ୍ଗଭୂତ ଉଦ୍ଗୀଥ ଆଦିରେ ଆଦିତ୍ୟ ଆଦିଙ୍କର ଭାବନା କରିବା ଦରକାର କାହିଁକି ନାଁ ଏହା ହିଁ ଯୁକ୍ତିଯୁକ୍ତ ଅଟେ, ଏହିଭଳି କରିବା ଦ୍ୱାରା କର୍ମସମୃଦ୍ଧିରୂପ ଫଳର ସିଦ୍ଧି ହୋଇଥାଏ ।।୬।।

- **ଆସୀନାଧିକରଣମ୍ ।।ସୂ. ୭-୧୦।।**

» **ଆସୀନଃ ସମ୍ଭବାତ୍ ।।୭।।**

ବସିରହି ଉପାସନା କରିବା ଦରକାର କାହିଁକି ନାଁ ବସିବା ଦ୍ୱାରା ନିର୍ବିଘ୍ନରେ ଉପାସନା କରିବା ସମ୍ଭବ ହୋଇଥାଏ ।।୭।।

» **ଧ୍ୟାନାଚ୍ଚ ।।୮।।**

ଉପାସନାର ସ୍ୱରୂପ ଧ୍ୟାନ ଅଟେ, ଏଣୁ (ଏହା ସିଦ୍ଧ ହେଉଛି କି ବସିରହି ଉପାସନା କରିବା ଦରକାର ।) ।।୮।।

» **ଅଚଲତ୍ୱଞ୍ଚାପେକ୍ଷ୍ୟ ।।୯।।**

ତଥା ଶ୍ରୁତିରେ ମଧ୍ୟ ଶରୀରର ନିଶ୍ଚଳତାକୁ ଆବଶ୍ୟକ ସ୍ୱୀକାରକରି ଧ୍ୟାନ କରିବା ପାଇଁ ଉପଦେଶ ପ୍ରଦାନ କରାଯାଇଛି ।।୯।।

» **ସ୍ମରନ୍ତି ଚ ।।୧୦।।**

ତଥା ଏହିଭଳି ସ୍ମରଣ କରାନ୍ତି ମଧ୍ୟ ।।୧୦।।

- **ଏକାଗ୍ରତାଽଧିକରଣମ୍ ।। ସୂ. ୧୧।।**

» **ଯତ୍ରୈକାଗ୍ରତା ତତ୍ରାବିଶେଷାତ୍ ।।୧୧।।**

କୌଣସି ବିଶେଷ ସ୍ଥାନ ଅଥବା ଦିଗର ବିଧାନ ନ ହେବା କାରଣରୁ (ଏହା ସିଦ୍ଧ ହେଉଛି କି) ଯେଉଁଠାରେ ଚିତ୍ତର ଏକାଗ୍ରତା (ସୁଗମତା ପୂର୍ବକ ଲଭ୍ୟ) ସେହିଠାରେ (ବସି ଧ୍ୟାନର ଅଭ୍ୟାସ କରିବା ଦରକାର) ।।୧୧।।

- **ଆପ୍ରାୟଣାଧିକରଣମ୍ ।। ସୂ. ୧୨।।**

» **ଆ ପ୍ରାୟଣାତ୍ତତ୍ରାପି ହି ଦୃଷ୍ଟମ୍ ।।୧୨।।**

ମରଣ ପର୍ଯ୍ୟନ୍ତ (ଉପାସନା କରିବା ଦରକାର) କାହିଁକି ନାଁ ମରଣ କାଳରେ ମଧ୍ୟ ଉପାସନା କରିଥିବାର ବିଧାନ ରହିଛି ।।୧୨।।

- **ତଦଧିଗମାଧିକରଣମ୍ ।। ସୂ. ୧୩।।**

» **ତଦଧିଗମେ ଉତ୍ତରପୂର୍ବାଘୟୋରଶ୍ଳେଷବିନାଶୌ ତଦ୍‌ବ୍ୟପଦେଶାତ୍ ।।୧୩।।**

ସେହି ପରବ୍ରହ୍ମ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଯିବାପରେ ଭବିଷ୍ୟତରେ ହେବାକୁ ଥିବା ଏବଂ ପୂର୍ବରୁ କରିଥିବା ପାପ ଗୁଡ଼ିକର କ୍ରମଶଃ ଅସମ୍ପର୍କ ଅର୍ଥାତ୍ ନାଶ ହୋଇଥାଏ । ଏହା ଶ୍ରୁତିରେ ସ୍ଥାନେ ସ୍ଥାନେ କୁହାଯାଇଛି ।।୧୩।।

- **ଇତରାସଂଶ୍ଳେଷାଧିକରଣମ୍ ।। ସୂ.୧୪।।**

» **ଇତରସ୍ୟାପ୍ୟେବମସଂଶ୍ଳେଷଃ ପାତେ ତୁ ।।୧୪।।**

ପୁଣ୍ୟକର୍ମ ସମୁଦାୟର ମଧ୍ୟ ଏହିଭଳି ସମ୍ବନ୍ଧ ନ ହେବା ଏବଂ ନାଶ ହୋଇଯିବା ବୁଝିବା ଦରକାର : ଦେହପାତ ହେବାପରେ ତ ତାହା ପରମାତ୍ମାଙ୍କୁ ପ୍ରାପ୍ତ ହୋଇଯାଇଥାଏ ।।୧୪।।

- **ଅନାରବ୍ଧାଧିକରଣମ୍ ।। ସୂ. ୧୫।।**

» **ଅନାରବ୍ଧକାର୍ଯ୍ୟେ ଏବ ତୁ ପୂର୍ବେ ତଦ୍‌ବଧେଃ ।।୧୫।।**

କିନ୍ତୁ ଯାହାର ଫଳଭୋଗରୂପ କାର୍ଯ୍ୟ ଆରମ୍ଭ ହୋଇନାହିଁ ତାଙ୍କର ସେହିଭଳି ପୂର୍ବକୃତ ପୁଣ୍ୟ ଓ ପାପ କେବଳ ନଷ୍ଟ ହୁଅନ୍ତି । କାହିଁକି ନାଁ ଶ୍ରୁତିରେ ପ୍ରାରବ୍ଧକର୍ମ ରହିବା ପର୍ଯ୍ୟନ୍ତ ଶରୀର ରହିବାର ଅବଧି ନିର୍ଦ୍ଧାରିତ ହୋଇଛି ।।୧୫।।

- **ଅଗ୍ନିହୋତ୍ରାଦ୍ୟଧିକରଣମ୍ ।। ସୂ. ୧୬-୧୭।।**

» **ଅଗ୍ନିହୋତ୍ରାଦି ତୁ ତତ୍କାର୍ଯ୍ୟାୟୈବ ତଦ୍ଦର୍ଶନାତ୍ ।।୧୬।।**

ଆଶ୍ରମ ଉପଯୋଗୀ ଅଗ୍ନିହୋତ୍ର ଆଦି ବିହିତ କର୍ମ ଅନୁଷ୍ଠାନର ବିଧାନ ତ ସେହି ସେହି ବିହିତ କର୍ମମାନଙ୍କର ରକ୍ଷା କରିବା ପାଇଁ ହିଁ ହୋଇଛି: ଯାହା ଶ୍ରୁତି ଓ ସ୍ମୃତିମାନଙ୍କରେ ହିଁ ଦେଖାଯାଇଛି ।।୧୬।।

» **ଅତୋଽନ୍ୟାପି ହ୍ୟେକେଷାମୁଭୟୋଃ ।।୧୭।।**

ଏଥିରୁ ଭିନ୍ନ କ୍ରିୟାଗୁଡ଼ିକ ମଧ ଜ୍ଞାନୀ ଓ ସାଧକ ଉଭୟଙ୍କ ପାଇଁ ହିଁ କୌଣସି ଏକ ଶାଖାବାଦୀଙ୍କ ମତରେ ବିହିତ ଅଟେ ।।୧୭।।

- **ବିଦ୍ୟାଜ୍ଞାନସାଧନାଧିକରଣମ୍ ।। ସୂ. ୧୮।।**

» **ଯଦେବ ବିଦ୍ୟୟେତି ହି ।।୧୮।।**

ଯାହା କିଛି ବିଦ୍ୟା ସହିତ (କରାଯାଏ), ଏହିଭଳି କଥନକୁ ପାଳନ କରୁଥିବା ଶ୍ରୁତି ରହିଛି ତାହା ପାଇଁ ବିଦ୍ୟା କର୍ମର ଅଙ୍ଗ କୌଣସି କୌଣସି ସ୍ଥାନରେ ହୋଇପାରେ ।।୧୮।।

- **ଇତରକ୍ଷପଣାଧିକରଣମ୍ ।। ସୂ. ୧୯।।**

» **ଭୋଗେନ ତ୍ୱିତରେ କ୍ଷପୟିତ୍ୱା ସମ୍ପଦ୍ୟତେ ।।୧୯।।**

ସଞ୍ଚିତ ଏବଂ କ୍ରିୟମାଣ ବ୍ୟତୀତ ଅନ୍ୟ ପ୍ରାରବ୍ଧରୂପ ଶୁଭାଶୁଭ କର୍ମକୁ ତ ଉପଭୋଗ ଦ୍ୱାରା କ୍ଷୀଣ କରାଯାଏ । ଆଉ ତାହାର ପାଳନକରି ଜ୍ଞାନୀ ପରମାତ୍ମାଙ୍କୁ ପ୍ରାପ୍ତ ହୋଇପାରେ ।।୧୯।।

ଇତି ମହର୍ଷିବ୍ୟାସବିରଚିତେ ବ୍ରହ୍ମସୂତ୍ରେ
ଚତୁର୍ଥାଧ୍ୟାୟସ୍ୟ ପ୍ରଥମଃ ପାଦଃ ।।୧।।

# ଦ୍ୱିତୀୟ ପାଦ

*ପ୍ରଥମପାଦରେ ଉପାସନା ବିଷୟକ ନିର୍ଣ୍ଣୟ ଉପସ୍ଥାପନକରି ଯେଉଁ ଜୀବନ୍ମୁକ୍ତ ମହାପୁରୁଷମାନଙ୍କର ବ୍ରହ୍ମଲୋକ ଆଦିରେ ଗମନ ହୋଇନଥାଏ, ତାଙ୍କୁ କିଭଳି ପରମାତ୍ମା ପ୍ରାପ୍ତ ହୁଅନ୍ତି, ସେହି ବିଷୟରେ ବିଚାର କରାଯାଇଛି । ଅଧୁନା ଏହି ଦ୍ୱିତୀୟ ପାଦରେ ଯେଉଁ ବ୍ରହ୍ମବିଦ୍ୟାର ଉପାସକ ବ୍ରହ୍ମଲୋକକୁ ଯାଆନ୍ତି, ତାଙ୍କର ଗତିର ପ୍ରକାର ବତାଯାଉଛି । ସାଧାରଣ ମନୁଷ୍ୟମାନଙ୍କର ଏବଂ ବ୍ରହ୍ମବିଦ୍ୟା ଉପାସକମାନଙ୍କର ଗତିରେ କେତେଦୂର ସାମଞ୍ଜସ୍ୟ ରହିଛି, ତାହା ସ୍ପଷ୍ଟ କରିବା ପାଇଁ ପ୍ରଥମେ ସାଧାରଣ ଗତିର ବର୍ଣ୍ଣନାରୁ ପ୍ରକରଣ ପ୍ରାରମ୍ଭ ହୋଇଛି ।*

- **ବାଗଧିକରଣମ୍ ।। ସୂ. ୧-୨।।**

» **ବାଙ୍‌ମନସି ଦର୍ଶନାଚ୍ଛବ୍ଦାଚ୍ଚ ।।୧।।**

ବାଣୀ ମନରେ ସ୍ଥିତ ହୋଇଯାଏ, ପ୍ରତ୍ୟକ୍ଷ ଦେଖିବା ଦ୍ୱାରା ଏବଂ ବେଦବାଣୀ ଦ୍ୱାରା ମଧ ଏହିକଥା ସିଦ୍ଧ ହେଉଛି ।।୧।।

» **ଅତ ଏବ ଚ ସର୍ବାଣ୍ୟନୁ ।।୨।।**

ଏଥିରୁ ଏହା ମଧ ବୁଝିନେବା ଦରକାର କି, ତାଙ୍କ ସହିତ ସମସ୍ତ ଇନ୍ଦ୍ରିୟଗଣ ମନ ମଧରେ ସ୍ଥିତ ହୋଇଯାଆନ୍ତି ।।୨।।

- **ମନୋଽଧିକରଣମ୍ ।। ସୂ. ୩।।**

» **ତନ୍ମନଃ ପ୍ରାଣ ଉତ୍ତରାତ୍ ।।୩।।**

ତଦୁପରାନ୍ତ ଏହା ସ୍ପଷ୍ଟ ହେଉଛି କି ତାହା ଇନ୍ଦ୍ରିୟ ସହିତ ଅର୍ଥାତ୍ ମନ ପ୍ରାଣରେ ସ୍ଥିତ ହୋଇଯାଏ ।।୩।।

- **ଅଧକ୍ଷାଧିକରଣମ୍ ।। ସୂ. ୪-୬।।**

» **ସୋଽଧକ୍ଷେ ତଦୁପଗମାଦିଭ୍ୟଃ ।।୪।।**

ସେହି ଜୀବାତ୍ମାର ଗମନ ଆଦି ବର୍ଣ୍ଣନାରୁ ଏହା ସିଦ୍ଧ ହେଉଛି କି ସେହି ପ୍ରାଣ, ମନ ଓ ଇନ୍ଦ୍ରିୟମାନଙ୍କ ସହିତ ନିଜର ସ୍ୱାମୀ ଜୀବାତ୍ମାରେ ସ୍ଥିତ ହୋଇଯାଆନ୍ତି ।।୪।।

» **ଭୂତେଷୁ ତଚ୍ଛ୍ରୁତେଃ ।।୫।।**

ତଦ୍‌ବିଷୟକ ଶ୍ରୁତିପ୍ରମାଣରୁ ଏହା ସିଦ୍ଧ ହେଉଛି କି, ପ୍ରାଣ ଏବଂ ମନ ଇନ୍ଦ୍ରିୟମାନଙ୍କ ସହିତ ଜୀବାତ୍ମା ପଞ୍ଚସୂକ୍ଷ୍ମଭୂତରେ ସ୍ଥିତ ହୁଅନ୍ତି ।।୫।।

» **ନୈକସ୍ମିନ୍ ଦର୍ଶୟତୋ ହି ।।୬।।**

ଗୋଟିଏ ତେଜସ୍ତତ୍ତ୍ୱରେ ସ୍ଥିତ ହେବା ଗ୍ରହଣ କରାଯାଇ ନ ପାରେ କାହିଁକି ନାଁ ଶ୍ରୁତି ଏବଂ ସ୍ମୃତି ଉଭୟେ ଜୀବାତ୍ମାରେ ପଞ୍ଚଭୂତ ଦ୍ୱାରା ଯୁକ୍ତ ହୋଇଥିବା ଦେଖାଯାଏ ।।୬।।

● **ଆସୃତ୍ୟୁପକ୍ରମାଧିକରଣମ୍ ।। ସୂ.୭।।**

» **ସମାନା ଚାସୃତ୍ୟୁପକ୍ରମାଦମୃତତ୍ୱଂ ଚାନୁପୋଷ୍ୟ ।।୭।।**

ଦେବଯାନ ମାର୍ଗ ଦ୍ୱାରା ବ୍ରହ୍ମଲୋକକୁ ଯିବାର କ୍ରମ ଆରମ୍ଭ ହେବା ପର୍ଯ୍ୟନ୍ତ ଉଭୟର ଗତି ସମାନ ଅଟେ । କାହିଁକି ନାଁ ସୂକ୍ଷ୍ମ ଶରୀରକୁ ସୁରକ୍ଷିତ ରଖି ବ୍ରହ୍ମଲୋକରେ ଅମୃତତ୍ତ୍ୱ ଲାଭ କରିବା ବ୍ରହ୍ମବିଦ୍ୟାର ଫଳ ବୋଲି ବତାଯାଇଛି ।।୭।।

● **ସଂସାରବ୍ୟପଦେଶାଧିକରଣମ୍ ।। ସୂ. ୮-୧୧।।**

» **ତଦାପୀତେଃ ସଂସାରବ୍ୟପଦେଶାତ୍ ।।୮।।**

ସାଧାରଣ ଜୀବର ମୃତ୍ୟୁଅନନ୍ତର ବାରମ୍ବାର ଜନ୍ମନେବାର କଥନ ରହିଥିବା କାରଣରୁ ସିଦ୍ଧ ହେଉଛି କି, ତାହାର ଉକ୍ତ ସୂକ୍ଷ୍ମଶରୀର ମୁକ୍ତାବସ୍ଥା ପ୍ରାପ୍ତ ହେବା ପର୍ଯ୍ୟନ୍ତ ରହିଥାଏ । ଏଣୁ ନୂତନ ସ୍ଥୂଳ ଶରୀର ପ୍ରାପ୍ତ ହେବାପୂର୍ବରୁ ତାର ପରମାତ୍ମାଙ୍କଠାରେ ସ୍ଥିତ ରହିବା ପ୍ରଳୟକାଳ ସଦୃଶ ଅଟେ ।।୮।।

» **ସୂକ୍ଷ୍ମଂ ପ୍ରମାଣତଶ୍ଚ ତଥୋପଲବ୍ଧେଃ ।।୯।।**

ବେଦ ପ୍ରମାଣରୁ ଏବଂ ସେହିଭଳି ଉପଲବ୍ଧମାନଙ୍କରୁ ମଧ ଏହା ସିଦ୍ଧ ହେଉଛି କି, ଯେଉଁଥିରେ ଜୀବାତ୍ମା ସ୍ଥିତ ହୁଏ ସେହି ଭୂତସମୁଦାୟ ସୂକ୍ଷ୍ମ ଅଟେ ।।୯।।

» **ନୋପମର୍ଦ୍ଦେନାତଃ ।।୧୦।।**

ସେହି ଭୂତ ସମୁଦାୟ ସୂକ୍ଷ୍ମ ହୋଇଥାନ୍ତି, ଏଣୁ ସେହି ସ୍ଥୂଳ ଶରୀରକୁ ଦାହ କରି

ନଷ୍ଟ କରିଲେ ମଧ ତାହାର ନାଶ ହୋଇନଥାଏ ।।୧୦।।

» **ଅସ୍ୟୈବ ଚୋପପତ୍ତେରେଷ ଉଷ୍ମା ।।୧୧।।**

ଏହି ଉଷ୍ମତା (ଯାହାକି ବିବିଧ ଶରୀରରେ ଅନୁଭୂତ ହୁଏ): ସୂକ୍ଷ୍ମ ଶରୀରରୁ ହିଁ ହୋଇଥାଏ: ଯୁକ୍ତି ଦ୍ୱାରା ମଧ (ଏହି କଥା ସିଦ୍ଧ ହେଉଛି, କାହିଁକି ନାଁ ସୂକ୍ଷ୍ମ ଶରୀର ବହିର୍ଗତ ହୋଇଯିବା ଦ୍ୱାରା ସ୍ଥୂଳ ଶରୀରର ଉଷ୍ମତା ରହେନାହିଁ) ।।୧୧।।

- **ପ୍ରତିଷେଧାଧିକରଣମ୍ ।। ସୂ. ୧୨-୧୪।।**

» **ପ୍ରତିଷେଧାଦିତି ଚେନ୍ନ ଶାରୀରାତ୍ ।।୧୨।।**

ଯଦି କୁହ ପ୍ରତିଷେଧ ହୋଇଥିବା କାରଣରୁ ତାହାର ଗମନ ହୁଏନାହିଁ, ତେବେ ତାହା ଠିକ୍‌ନୁହେଁ କାହିଁକି ନାଁ ସେହି ପ୍ରତିଷେଧ ବଚନ ଦ୍ୱାରା ଜୀବାତ୍ମାଠାରୁ ପ୍ରାଣକୁ ଅଲଗା ହେବାର ନିଷେଧ କରାଯାଇଛି ।।୧୨।।

» **ସ୍ପଷ୍ଟୋ ହ୍ୟେକେଷାମ୍ ।।୧୩।।**

ଏକ ଶାଖାଯୁକ୍ତ ଶ୍ରୁତିରେ ସ୍ପଷ୍ଟଭାବରେ ଶରୀରଠାରୁ ପ୍ରାଣର ଉତ୍କ୍ରମଣ ନ ହେବା କଥା କୁହାଯାଇଛି, ଏଣୁ ଏଥିରୁ ସିଦ୍ଧ ହେଉଛି କି ତାହାର ଗମନ ହୁଏ ନାହିଁ ।।୧୩।।

» **ସ୍ମର୍ଯ୍ୟତେ ଚ ।।୧୪।।**

ତଥା ସ୍ମୃତି ଦ୍ୱାରା ମଧ (ଏହା ସିଦ୍ଧ ହେଉଛି) ।।୧୪।।

- **ବାଗାଦିଲୟାଧିକରଣମ୍ ।। ସୂ.୧୫।।**

» **ତାନି ପରେ ତଥା ହ୍ୟାହ ।।୧୫।।**

ସେହି ପ୍ରାଣ, ଅନ୍ତଃକରଣ, ସୂକ୍ଷ୍ମପଞ୍ଚଭୂତ ତଥା ଇନ୍ଦ୍ରିୟଗଣ ସମସ୍ତେ ସେହି ପରବ୍ରହ୍ମଙ୍କଠାରେ ବିଲୀନ ହୋଇଯାଆନ୍ତି କାହିଁକି ନାଁ ଏହିଭଳି ଶ୍ରୁତି ସ୍ୱୀକାର କରେ ।।୧୫।।

- **ଅବିଭାଗାଧିକରଣମ୍ ।। ସୂ. ୧୬।।**

» **ଅବିଭାଗୋ ବଚନାତ୍ ।।୧୬।।**

ଶ୍ରୁତିର କଥନାନୁସାରେ ବିଭାଗ ନ ହୋଇଥିବା କଥା ସିଦ୍ଧ ହେଉଛି ।।୧୬।।

- **ତଦୋକୋଽଧିକରଣମ୍ ।। ସୂ. ୧୭।।**

» **ତଦୋକୋଽଗ୍ରଜ୍ୱଲନଂ ତତ୍ପ୍ରକାଶିତଦ୍ୱାରୋ ବିଦ୍ୟା-ସାମର୍ଥ୍ୟାତ୍ତଚ୍ଛେଷଗ ତ୍ୟନୁସ୍ମୃତିଯୋଗାଚ୍ଚ ହାର୍ଦାନୁଗୃହୀତଃ ଶତାଧିକୟା ।।୧୭।।**

ସ୍ଥୂଳ ଶରୀରରୁ ବହିର୍ଗତ ହେବା ସମୟରେ ଜୀବାତ୍ମାର ନିବାସସ୍ଥାନ ଯେଉଁ ହୃଦୟ, ତାର ଅଗ୍ରଭାଗରେ ପ୍ରକାଶ ହୋଇଥାଏ: ସେହି ପ୍ରକାଶ ସାହାଯ୍ୟରେ ଯାହାଙ୍କର ବହିର୍ଗତ ଦ୍ୱାର ପ୍ରକାଶିତ ହୋଇଯାଏ, ଏହିଭଳି ଉକ୍ତ ବିଦ୍ୱାନ ବ୍ରହ୍ମବିଦ୍ୟାର ପ୍ରଭାବରୁ ତଥା ଉକ୍ତ ବିଦ୍ୟାର ଶେଷଅଙ୍ଗ ଯାହାକି ବ୍ରହ୍ମଲୋକର ଗମନ ଅଟେ, ସେହି ଗମନ ବିଷୟକ ସଂସ୍କାରର ସ୍ମୃତିଯୋଗରୁ ହୃଦୟସ୍ଥ ପରମେଶ୍ୱରଙ୍କର କୃପା ଦ୍ୱାରା ଅନୁଗୃହୀତ ହୋଇଥିବା ଏକଶହ ନାଡ଼ୀମାନଙ୍କ ମଧ୍ୟରେ ଅଧିକ ଯେଉଁ ଏକ ସୁଷୁମ୍ନାନାଡ଼ୀ ରହିଛି ତାହାଦ୍ୱାରା ବ୍ରହ୍ମରନ୍ଧ୍ରରୁ ନିର୍ଗତ ହୋଇଯାଏ ।।୧୭।।

- **ରଶ୍ମ୍ୟଧିକରଣମ୍ ।। ସୂ.୧୮-୧୯।।**

» **ରଶ୍ମ୍ୟନୁସାରୀ ।।୧୮।।**

ସୂର୍ଯ୍ୟଙ୍କର ରଶ୍ମିମାନଙ୍କରେ ସ୍ଥିତହୋଇ ତାଙ୍କୁ ଅବଲମ୍ବନକରି (ସେ ସୂର୍ଯ୍ୟଲୋକ ଦ୍ୱାରଦେଇ ବ୍ରହ୍ମଲୋକକୁ ଚାଲିଯାଇଥାଏ ।) ।।୧୮।।

» **ନିଶି ନେତି ଚେନ୍ନ ସମ୍ବନ୍ଧସ୍ୟ ଯାବଦ୍ଦେହଭାବିତ୍ୱାଦ୍ଦର୍ଶୟତି ଚ ।।୧୯।।**

ଯଦି କୁହକି ରାତ୍ରିରେ ସୂର୍ଯ୍ୟଙ୍କର ରଶ୍ମିସହିତ ନାଡ଼ୀର କିଛି ସମ୍ପର୍କ ନାହିଁ ବୋଲି ତେବେ ତାହା ଠିକ୍ ନୁହେଁ କାହିଁକି ନାଁ ନାଡ଼ୀ ଏବଂ ସୂର୍ଯ୍ୟରଶ୍ମିଙ୍କର ସମ୍ବନ୍ଧ ଯେତେବେଳ ପର୍ଯ୍ୟନ୍ତ ରହେ, ଯେତେବେଳ ପର୍ଯ୍ୟନ୍ତ ଶରୀର ଏବଂ ତାହାର ସତ୍ତା ରହିଛି । ତେଣୁ ଦିନ ହେଉ କି ରାତି କେବେହେଲେ ନାଡ଼ୀ ଏବଂ ସୂର୍ଯ୍ୟରଶ୍ମିଙ୍କର ସମ୍ବନ୍ଧ ବିଚ୍ଛିନ୍ନ ହୁଏ ନାହିଁ, ଏହିକଥା ଶ୍ରୁତିରେ ସ୍ପଷ୍ଟଭାବେ ଦର୍ଶାଯାଇଛି ।।୧୯।।

- **ଦକ୍ଷିଣାୟନାଧିକରଣମ୍ ।। ସୂ. ୨୦-୨୧।।**

» **ଅତଶ୍ଚାୟନେଽପି ହି ଦକ୍ଷିଣେ ।।୨୦।।**

ଏହା ପୂର୍ବରୁ କୁହାଯାଇଥିବା କାରଣରୁ ହିଁ ଦକ୍ଷିଣ ଅୟନରେ (ମୃତ୍ୟୁଗମନ

କରୁଥିବା ବ୍ୟକ୍ତି) ମଧ (ବ୍ରହ୍ମଲୋକକୁ ଗମନ କରିଥାଏ) ।।୨୦।।

» **ଯୋଗିନଃ ପ୍ରତି ଚ ସ୍ମର୍ଯ୍ୟତେ ସ୍ମାର୍ତ୍ତେ ଚୈତେ ।।୨୧।।**

ଏହା ବ୍ୟତୀତ ଯୋଗୀମାନଙ୍କ ପାଇଁ ଏହିକାଳ ବିଷୟକ ନିୟମ ସ୍ମୃତିରେ କୁହାଯାଇଛି ଏବଂ ସେଠାରେ କୁହାଯାଇଥିବା ଏହି ଅପୁନରାବୃତ୍ତି ଏବଂ ପୁନରାବୃତ୍ତି ରୂପ ଉଭୟ ମାର୍ଗ ସ୍ମାର୍ତ୍ତ ଅଟେ ।।୨୧।।

ଇତି ମହର୍ଷିବ୍ୟାସବିରଚିତେ ବ୍ରହ୍ମସୂତ୍ରେ
ଚତୁର୍ଥାଧ୍ୟାୟସ୍ୟ ଦ୍ୱିତୀୟଃ ପାଦଃ ।।୨।।

# ତୃତୀୟ ପାଦ

*ଦ୍ୱିତୀୟପାଦରେ ବର୍ଣ୍ଣନାକରାଗଲା କି ବ୍ରହ୍ମଲୋକ ଗମନର ମାର୍ଗ ଆରମ୍ଭହେବା ପୂର୍ବ ପର୍ଯ୍ୟନ୍ତ ଗତି (ବାଣୀର ମନଠାରେ ଲୀନ ହେବା ଆଦି) ବିଦ୍ୱାନ ଏବଂ ଅବିଦ୍ୱାନ ଉଭୟଙ୍କ ପାଇଁ ସମାନ ଅଟେ ପୁଣି ଅବିଦ୍ୱାନ କର୍ମାନୁସାରେ ସଂସାରରେ ପୁନଃ ନୂତନ ଶରୀର ଗ୍ରହଣ କରିଥାଏ ଏବଂ ଜ୍ଞାନୀ ମହାପୁରୁଷ ଜ୍ଞାନ ଦ୍ୱାରା ପ୍ରକାଶିତ ମୋକ୍ଷନାଡ଼ୀ ଦ୍ୱାରର ଆଶ୍ରୟ ନେଇ ସୂର୍ଯ୍ୟଙ୍କର ରଶ୍ମିମାନଙ୍କ ଦ୍ୱାରା ସୂର୍ଯ୍ୟଲୋକରେ ପହଞ୍ଚି ସେଠାରୁ ବ୍ରହ୍ମଲୋକକୁ ଯାଇଥାଏ । ରାତ୍ରି ଏବଂ ଦକ୍ଷିଣାୟନ କାଳରେ ମଧ ବିଦ୍ୱାନଙ୍କର ଏହି ଉର୍ଦ୍ଧଗତିରେ କୌଣସି ବାଧା ସୃଷ୍ଟି ହୁଏନାହିଁ କିନ୍ତୁ ବ୍ରହ୍ମଲୋକ ଯିବାପାଇଁ ଯେଉଁ ମାର୍ଗ ରହିଛି ତାହାର ବର୍ଣ୍ଣନା କେଉଁଠାରେ ଅର୍ଚ୍ଚିମାର୍ଗ, କେଉଁଠାରେ ଉତ୍ତରାୟଣ ମାର୍ଗ ଆଉ କେଉଁଠାରେ ଦେବଯାନ ମାର୍ଗ ନାମରେ ନାମିତ କରାଯାଇଛି । ଉକ୍ତ ମାର୍ଗର ଚିହ୍ନ ମଧ ଭିନ୍ନ ଭିନ୍ନ ବତାଯାଇଛି ଏଣୁ ଏଠାରେ ଜିଜ୍ଞାସା ଉତ୍ପନ୍ନ ହୋଇପାରେ କି ଉପାସନା ଏବଂ ଅଧିକାରୀ ଭେଦରେ ଏହି ମାର୍ଗ ଭିନ୍ନ ଭିନ୍ନ ଅଟେ ନାଁ ସେହି ଏକ ମାର୍ଗର ଭିନ୍ନ ଭିନ୍ନ ନାମ ଅଟେ ? ଏହା ବ୍ୟତୀତ ମାର୍ଗରେ କେଉଁଠି ଅନେକ ଦେବଲୋକର ବର୍ଣ୍ଣନା ହୋଇଛି ତ କେଉଁଠି ଦିନ, ପକ୍ଷ, ମାସ, ଅୟନ ଓ ସମ୍ବତ୍ସରର ବର୍ଣ୍ଣନା ଆସୁଛି । ପୁଣି କେଉଁଠି ସୂର୍ଯ୍ୟରଶ୍ମି ଓ ସୂର୍ଯ୍ୟଲୋକର ବର୍ଣ୍ଣନା ଆସୁଛି । ଏହି ବର୍ଣ୍ଣନାମାନଙ୍କର ଭେଦ ଗୋଟିଏ ମାର୍ଗ ମାନିବା ଦ୍ୱାରା କି ପ୍ରକାର ଭୁଲ ହୁଏ ? ତାହାର ନିର୍ଣ୍ଣୟ କରିବାପାଇଁ ଏହି ତୃତୀୟ ପାଦର ଉପସ୍ଥାପନ ।*

- ଅର୍ଚିରାଦ୍ୟଧିକରଣମ୍ ।। ସୂ. ୧ ।।

» ଅର୍ଚିରାଦିନା ତତ୍ପ୍ରଥିତେଃ ।।୧।।

ଅର୍ଚ୍ଚି ଦ୍ୱାରା ଆରମ୍ଭ ହେଉଥିବା ସେହି ଏକ ମାର୍ଗ ସାହାଯ୍ୟରେ (ବ୍ରହ୍ମଲୋକକୁ ଯାଇଥାନ୍ତି): କାହିଁକି ନାଁ ବ୍ରହ୍ମଜ୍ଞାନୀ ମାନଙ୍କ ପାଇଁ ଏହି ମାର୍ଗଟି ବିଭିନ୍ନ ନାମରେ ପ୍ରସିଦ୍ଧ ଅଟେ ।।୧

- ବାୟ୍ୱଧିକରଣମ୍ ।। ସୂ. ୨।।

» ବାୟୁମବ୍ଦାଦବିଶେଷବିଶେଷାଭ୍ୟାମ୍ ।।୨।।

ବାୟୁଲୋକକୁ ସମ୍ବତ୍ସର ପରେ ବୁଝିବା ଦରକାର କାହିଁକି ନାଁ ବାୟୁର ବର୍ଣ୍ଣନା କେଉଁଠି ସମାନ ଆଉ କେଉଁଠି ବିଶେଷ ଭାବରେ ହୋଇଛି ।।୨

- ତଡିଦଧିକରଣମ୍ ।। ସୂ. ୩।।

» ତଡିତୋଽଧି ବରୁଣଃ ସମ୍ବନ୍ଧାତ୍ ।।୩।।

ବିଦ୍ୟୁତ୍ (ତଡ଼ିତ୍) ଉପରେ ବରୁଣ ଲୋକ ଅଛି ବୋଲି ଜାଣିବା ଦରକାର କାହିଁକି ନାଁ ସେହି ଦୁଇଟିର ପରସ୍ପର ସମ୍ବନ୍ଧ ରହିଛି ।।୩

- ଆତିବାହିକାଧିକରଣମ୍ ।। ସୂ.୪-୬।।

» ଆତିବାହିକାସ୍ତଲ୍ଲିଙ୍ଗାତ୍ ।।୪।।

ତାହା ପ୍ରତ୍ୟେକ ସାଧକଙ୍କୁ ଗୋଟିଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନରେ ପହଞ୍ଚାଇ ଦେଲାଭଳି ତଦ୍ ତତ୍ ଲୋକର ଅଭିମାନୀ ପୁରୁଷ ଅଟନ୍ତି କାହିଁକି ନାଁ ଶ୍ରୁତିରେ ସେହିଭଳି ଲକ୍ଷଣ ଦେଖାଯାଇଛି ।।୪

» ଉଭୟବ୍ୟାମୋହାଉତ୍ସିଦ୍ଧେଃ ।।୫।।

ଉଭୟେ ମୋହଯୁକ୍ତ ହୋଇଯିବା ପ୍ରସଙ୍ଗ ଆସୁଛି, ଏଣୁ ଅଭିମାନୀ ଦେବତା ନାମରେ ହିଁ ତାଙ୍କ ଦ୍ୱାରା ବ୍ରହ୍ମଲୋକ ପର୍ଯ୍ୟନ୍ତ ନେଇଯିବାର କାର୍ଯ୍ୟ ସିଦ୍ଧ ହେଉଛି । ଅତଃ ସେହିଭଳି ମାନିବା ଦରକାର ।।୫

» ବୈଦ୍ୟୁତେନୈବ ତତସ୍ତଚ୍ଛ୍ରୁତେଃ ।।୬।।

ସେଠାରୁ ଆଗକୁ ବ୍ରହ୍ମଲୋକ ପର୍ଯ୍ୟନ୍ତ ବିଦ୍ୟୁତ୍ ଲୋକରେ ପ୍ରକଟ ହୋଇଥିବା ଅମାନବ ପୁରୁଷ ଦ୍ୱାରା ହିଁ (ପହଞ୍ଚା ଯାଇଥାନ୍ତି): କାହିଁକି ନାଁ ସେହିଭଳି କଥା ଶ୍ରୁତିରେ କୁହାଯାଇଛି ।।୬

- **କାର୍ଯ୍ୟାଧିକରଣମ୍ ।। ସୂ. ୭-୧୪।।**

» **କାର୍ଯ୍ୟଂ ବାଦରିରସ୍ୟ ଗତ୍ୟୁପପତ୍ତେଃ ।।୭।।**

ଆଚାର୍ଯ୍ୟ ବାଦରିକାଙ୍କର ମତ ହେଉଛି କି, କାର୍ଯ୍ୟବ୍ରହ୍ମଙ୍କୁ ଅର୍ଥାତ୍ ହିରଣ୍ୟଗର୍ଭଙ୍କୁ (ପ୍ରାପ୍ତ ହୁଅନ୍ତି): କାହିଁକି ନାଁ ଗମନ କରିବାର କଥନର ଉପପତ୍ତି: ଏହି କାର୍ଯ୍ୟବ୍ରହ୍ମଙ୍କ ପାଇଁ ହିଁ ହୋଇପାରେ ।।୭

» **ବିଶେଷିତତ୍ୱାଚ୍ଚ ।।୮।।**

ବିଶେଷଣ ଦେଇ ସ୍ପଷ୍ଟ ଭାବରେ କୁହାଯାଇପାରେ: ଏଇଥିପାଇଁ ମଧ କାର୍ଯ୍ୟବ୍ରହ୍ମଙ୍କର ପ୍ରାପ୍ତି ମାନିନେବା ଉଚିତ ହେବ ।।୮

» **ସାମୀପ୍ୟାତ୍ତୁ ତଦ୍‌ବ୍ୟପଦେଶଃ ।।୯।।**

ସେହି କଥନ ତ ବ୍ରହ୍ମଙ୍କର ସମୀପତା କାରଣରୁ ବ୍ରହ୍ମାଙ୍କ ପାଇଁ ମଧ ହୋଇପାରେ ।।୯

» **କାର୍ଯ୍ୟାତ୍ୟୟେ ତଦଧକ୍ଷେଣ ସହାତଃ ପରମଭିଧାନାତ୍ ।।୧୦।।**

କାର୍ଯ୍ୟରୂପ ବ୍ରହ୍ମଲୋକର ନାଶ ହୋଇଯିବା ପରେ ତାହାର ସ୍ୱାମୀ ବ୍ରହ୍ମାଙ୍କ ସହିତ ଏହା ସାହାଯ୍ୟରେ ଶ୍ରେଷ୍ଠ ପରବ୍ରହ୍ମ ପରମାତ୍ମାଙ୍କୁ ପ୍ରାପ୍ତ ହେବାର କଥନ ରହିଛି । ଏଣୁ (ପୁନରାବୃତ୍ତି ହେବନାହିଁ) ।।୧୦

» **ସ୍ମୃତେଶ୍ଚ ।।୧୧।।**

ସ୍ମୃତି ପ୍ରମାଣ ସାହାଯ୍ୟରେ ମଧ ଏହି କଥା ସିଦ୍ଧ ହେଉଛି ।।୧୧

» **ପରଂ ଜୈମିନିର୍ମୁଖ୍ୟତ୍ୱାତ୍ ।।୧୨।।**

ଆଚାର୍ଯ୍ୟ ଜୈମିନୀଙ୍କର ମତ ହେଉଛି, ବ୍ରହ୍ମ ଶବ୍ଦର ମୁଖ୍ୟ ବାଚ୍ୟାର୍ଥ ହୋଇଥିବା କାରଣରୁ ପରବ୍ରହ୍ମଙ୍କୁ ପ୍ରାପ୍ତ ହୋଇଥାଏ (ଏହା ମାନିବା ଯୁକ୍ତିସଙ୍ଗତ) ।।୧୨

» **ଦର୍ଶନାଚ୍ଚ ।।୧୩।।**

ଶ୍ରୁତିରେ ସ୍ଥାନେ ସ୍ଥାନେ ଗତିପୂର୍ବକ ପରବ୍ରହ୍ମଙ୍କର ପ୍ରାପ୍ତି ଦେଖାଯାଇଛି । ଏହା ଦ୍ୱାରା ମଧ (ଏହା ସିଦ୍ଧ ହେଉଛି କି, କାର୍ଯ୍ୟବ୍ରହ୍ମଙ୍କର ପ୍ରାପ୍ତି ହୁଏ ନାହିଁ) ।।୧୩

» **ନ ଚ କାର୍ଯ୍ୟେ ପ୍ରତିପତ୍ତ୍ୟଭିସନ୍ଧିଃ ।।୧୪।।**

ଏହା ବ୍ୟତୀତ ସେହି ବ୍ରହ୍ମବିଦ୍ୟା ଉପାସକମାନଙ୍କର ପ୍ରାପ୍ତି ବିଷୟକ ସଂକଳ୍ପ

ମଧ କାର୍ଯ୍ୟବ୍ରହ୍ମ ପାଇଁ ନୁହେଁ ।।୧୪

• **ଅପ୍ରତୀକାଲମ୍ବନାଧିକରଣମ୍ ।। ସୂ. ୧୫-୧୬।।**

» **ଅପ୍ରତୀକାଲମ୍ବନାନ୍ନୟତୀତି ବାଦରାୟଣ ଉଭୟଥାଦୋଷାଉତ୍କ୍ରତୁଶ୍ଚ ।।୧୫।।**

ବାଣୀ ଆଦି ପ୍ରତୀକର ଅବଲମ୍ବନକରି ଉପାସନାକାରୀଙ୍କ ବ୍ୟତୀତ ଅନ୍ୟସମସ୍ତ ଉପାସକଙ୍କୁ ଏହି ଅର୍ଚ୍ଚି ଆଦି ଦେବଲୋକ ଦେବଯାନ ମାର୍ଗ ସାହାଯ୍ୟରେ ନେଇଯାଇଥାଏ । ଅତଃ ଉଭୟ ପ୍ରକାରେ ମାନିବା ଦ୍ୱାରା କୌଣସି ଦୋଷ ନ ହେଉଥିବା କାରଣରୁ ତାଙ୍କ ସଂକଳ୍ପାନୁସାରେ ପରବ୍ରହ୍ମଙ୍କୁ ଏବଂ କାର୍ଯ୍ୟବ୍ରହ୍ମଙ୍କୁ ପ୍ରାପ୍ତ କରିବା ସିଦ୍ଧ ହୋଇଥାଏ, ଏହା ବ୍ୟାସଦେବଙ୍କର ମତ ଅଟେ ।।୧୫

» ବିଶେଷଞ୍ଚ ଦର୍ଶୟତି ।।୧୬।।

ଏହାର ବିଶେଷ କାରଣ ମଧ ଶ୍ରୁତିରେ ଦେଖାଯାଇଛି ।।୧୬

ଇତି ମହର୍ଷିବ୍ୟାସବିରଚିତେ ବ୍ରହ୍ମସୂତ୍ରେ
ଚତୁର୍ଥଧାୟସ୍ୟ ତୃତୀୟଃ ପାଦଃ ।।

# ଚତୁର୍ଥ ପାଦ

*ତୃତୀୟ ପାଦରେ ଅର୍ଚ୍ଚି ଆଦି ମାର୍ଗ ଦ୍ୱାରା ପରବ୍ରହ୍ମ ଏବଂ କାର୍ଯ୍ୟବ୍ରହ୍ମଙ୍କ ଲୋକକୁ ଗମନ କରୁଥିବା ଗତି ବିଷୟରେ ନିର୍ଣ୍ଣୟ କରାଯାଇଛି । ଏବେ ଉପାସକଙ୍କ ସଂକଳ୍ପ ଅନୁସାରେ ବ୍ରହ୍ମଲୋକରେ ପହଞ୍ଚିବା ପରେ ଯାହା ତାଙ୍କ ସ୍ଥିତିର ଭେଦ ଅଟେ ତାହାର ନିର୍ଣ୍ଣୟ କରିବାପାଇଁ ଚତୁର୍ଥପାଦର ଆରମ୍ଭ କରାଗଲା । ସେଥିରେ ପ୍ରଥମେ ଉକ୍ତ ସାଧକଙ୍କ ବିଷୟରେ ବର୍ଣ୍ଣିତ ହୋଇଛି, ଯାହାଙ୍କର ଉଦ୍ଦେଶ୍ୟ ପରବ୍ରହ୍ମ ପ୍ରାପ୍ତି ଅଟେ ଆଉ ଯିଏକି ସେହି ପରବ୍ରହ୍ମଙ୍କର ଅପ୍ରାକୃତ, ଦିବ୍ୟ ପରମଧାମକୁ ହିଁ ଯାଇଥାନ୍ତି ।*

- **ସମ୍ପଦ୍ୟାବିର୍ଭାବାଧିକରଣମ୍ ।। ସୂ. ୧-୩।।**

» **ସମ୍ପଦ୍ୟାବିର୍ଭାବଃ ସ୍ୱେନ ଶବ୍ଦାତ୍ ।।୧।।**

ପରମଧାମକୁ ପ୍ରାପ୍ତହୋଇ ଏହି ଜୀବ ସ୍ୱ-ବାସ୍ତବିକ ସ୍ୱରୂପରେ ପ୍ରାକଟ୍ୟ ହୁଏ: କାହିଁକି ନାଁ ଶ୍ରୁତିରେ ଏହିଭଳି ହିଁ କୁହାଯାଇଛି ।।୧

» **ମୁକ୍ତଃ ପ୍ରତିଜ୍ଞାନାତ୍ ।।୨।।**

ପ୍ରତିଜ୍ଞା କରାଯାଇଥିବା କାରଣରୁ ଏହା ସିଦ୍ଧ ହେଉଛି କି, ସେହି ସ୍ୱରୂପ ସମସ୍ତ ପ୍ରକାରର ବନ୍ଧନରୁ ମୁକ୍ତ ହୋଇଥାଏ ।।୨

» **ଆତ୍ମା ପ୍ରକରଣାତ୍ ।।୩।।**

ପ୍ରକରଣରେ ଏହା ସିଦ୍ଧ ହେଉଛି କି, ତାହା ଶୁଦ୍ଧ ଆତ୍ମା ହୋଇଯାଏ ।।୩

- **ଅବିଭାଗେନ ଦୃଷ୍ଟତ୍ୱାଧିକରଣମ୍ ।। ସୂ. ୪।।**

» **ଅବିଭାଗେନ ଦୃଷ୍ଟତ୍ୱାତ୍ ।।୪।।**

ସେହି ମୁକ୍ତାତ୍ମାଙ୍କର ସ୍ଥିତି ସେହି ପରବ୍ରହ୍ମରେ ଅବିଭକ୍ତ ରୂପରେ ହୋଇଥାଏ କାରଣ ଏହା ହିଁ ଶ୍ରୁତିରେ ଦେଖିବାକୁ ମିଳେ ।।୪

• ବ୍ରାହ୍ମାଧିକରଣମ୍ ।। ସୂ. ୫-୭।।

» ବ୍ରାହ୍ମେଣ ଜୈମିନିରୂପନ୍ୟାସାଦିଭ୍ୟଃ ।।୫।।

ଆଚାର୍ଯ୍ୟ ଜୈମିନୀ କହନ୍ତି କି, ବ୍ରହ୍ମଙ୍କର ସଦୃଶ ରୂପରେ ସ୍ଥିତ କାହିଁକି ନାଁ ଶ୍ରୁତିରେ ଯାହା ତାଙ୍କର ସ୍ୱରୂପ ଭାବେ ନିରୂପଣ କରାଯାଇଛି, ତାକୁ ଦେଖି ଆଉ ସ୍ମୃତି ପ୍ରମାଣରୁ ଏହା ସିଦ୍ଧ ହେଉଛି ।।୫

» ଚିତିତନ୍ମାତ୍ରେଣ ତଦାତ୍ମକତ୍ୱାଦିତ୍ୟୌଡୁଲୋମିଃ ।।୬।।

କେବଳ ଚେତନମାତ୍ର ସ୍ୱରୂପ ସାହାଯ୍ୟରେ ସ୍ଥିତ ହୋଇଥାଏ କାହିଁକି ନାଁ ତାହାର ବାସ୍ତବିକ ସ୍ୱରୂପ ସେହିଭଳି ଅଟେ, ଏହିଭଳି ଆଚାର୍ଯ୍ୟ ଔଡୁଲୋମୀ କହନ୍ତି ।।୬

» ଏବମପ୍ୟୁପନ୍ୟାସାତ୍ ପୂର୍ବଭାବାଦବିରୋଧଂ ବାଦରାୟଣଃ ।।୭।।

ଏହି ପ୍ରକାରେ ଅର୍ଥାତ୍ ଔଡୁଲୋମୀ ଏବଂ ଜୈମିନୀଙ୍କ କଥନାନୁସାରେ ମଧ, ଶ୍ରୁତିରେ ସେହି ମୁକ୍ତାତ୍ମାଙ୍କର ସ୍ୱରୂପ ନିରୂପଣ ହୋଇଥିବାରୁ ତଥା ପ୍ରଥମେ (ଚତୁର୍ଥ ସୂତ୍ରରେ) କୁହାଯାଇଥିବା ଭାବ ଅନୁସାରେ ଏହି ସିଦ୍ଧାନ୍ତରେ କୌଣସି ବିରୋଧ ନାହିଁ: ଏହା ବାଦରାୟଣ କହନ୍ତି ।।୭

• ସଙ୍କଳ୍ପାଧିକରଣମ୍ ।। ସୂ. ୮-୯।।

» ସଙ୍କଳ୍ପାଦେବ ତୁ ତଚ୍ଛ୍ରୁତେଃ ।।୮।।

ସେହି ଭୋଗମାନଙ୍କର ପ୍ରାପ୍ତି ତ ସଂକଳ୍ପ ଦ୍ୱାରା ହିଁ ହୋଇଥାଏ କାହିଁକି ନାଁ ଶ୍ରୁତିରେ ଏହିକଥା ହିଁ କୁହାଯାଇଛି ।।୮

» ଅତ ଏବ ଚାନନ୍ୟାଧିପତିଃ ।।୯।।

ଏଇଥିପାଇଁ ତ ମୁକ୍ତାତ୍ମାଙ୍କୁ ବ୍ରହ୍ମଙ୍କ ବ୍ୟତୀତ ଅନ୍ୟ କୌଣସି ସ୍ୱାମୀରହିତ ଭାବେ ବର୍ଣ୍ଣନା କରାଯାଇଛି ।।୯

• ଅଭାବାଧିକରଣମ୍ ।। ସୂ. ୧୦-୧୪।।

» ଅଭାବଂ ବାଦରିରାହ ହ୍ୟେବମ୍ ।। ୧୦।।

ତାଙ୍କର ଶରୀର ନ ଥାଏ, ଏହିଭଳି ଆଚାର୍ଯ୍ୟ ବାଦରୀ ମାନନ୍ତି କାହିଁକି ନାଁ ଏହିଭଳି କଥା ଶ୍ରୁତି କହିଛନ୍ତି ।।୧୦

» ଭାବଂ ଜୈମିନିର୍ବିକଳ୍ପାମନନାତ୍ ।।୧୧।।

ଆଚାର୍ଯ୍ୟ ଜୈମିନୀ ମୁକ୍ତାତ୍ମାଙ୍କ ଶରୀରର ଅସ୍ତିତ୍ୱକୁ ମାନନ୍ତି କାହିଁକି ନାଁ ଅନେକ ପ୍ରକାରେ ସ୍ଥିତ ହୋଇଥିବା କଥା ଶ୍ରୁତିରେ ମଧ୍ୟ ବର୍ଣ୍ଣିତ ହୋଇଛି ।।୧୧

» ଦ୍ୱାଦଶାହବଦୁଭୟବିଧଂ ବାଦରାୟଣୋଽତଃ ।।୧୨।।

ବେଦବ୍ୟାସ କହନ୍ତି କି, ପୂର୍ବୋକ୍ତ ଉଭୟ ମତରେ ଦ୍ୱାଦଶାହ ଯଜ୍ଞ ସଦୃଶ ଉଭୟ ପ୍ରକାର ସ୍ଥିତି ଉଚିତ ଅଟେ ।।୧୨

» ତନ୍ୱଭାବେ ସନ୍ଧ୍ୟବଦୁପପତ୍ତେଃ ।।୧୩।।

ଶରୀରର ଅଭାବରେ ସ୍ୱପ୍ନ ଭଳି (ଭୋଗମାନଙ୍କର ଉପଭୋଗ ହୋଇଥାଏ) କାହିଁକି ନାଁ ଏଭଳି ମାନିବା ଯୁକ୍ତିସଙ୍ଗତ ।।୧୩

» ଭାବେ ଜାଗ୍ରଦ୍ୱତ୍ ।।୧୪।।

ଶରୀର ଯୋଗୁଁ ଜାଗ୍ରତ ଅବସ୍ଥା ଭଳି ଉପଭୋଗ ହେବା ଯୁକ୍ତିସଙ୍ଗତ ହୋଇଥାଏ ।।୧୪

• ପ୍ରଦୀପାଧିକରଣମ୍ ।।। ସୂ. ୧୫-୧୬।।

» ପ୍ରଦୀପବଦାବେଶସ୍ତଥା ହି ଦର୍ଶୟତି ।।୧୫।।

ପ୍ରଦୀପ ସଦୃଶ ସମସ୍ତ ଶରୀରରେ ମୁକ୍ତାତ୍ମାଙ୍କ ପ୍ରବେଶ ହୋଇପାରେ କାହିଁକି ନାଁ ଶ୍ରୁତିରେ ଏହିଭଳି ଦର୍ଶିତ ହୋଇଛି ।।୧୫

» ସ୍ୱାପ୍ୟୟସମ୍ପତ୍ତ୍ୟୋରନ୍ୟତରାପେକ୍ଷମାବିଷ୍କୃତଂ ହି ।।୧୬।।

ସୁଷୁପ୍ତି ଏବଂ ପରବ୍ରହ୍ମଙ୍କର ପ୍ରାପ୍ତି-- ଏହି ଉଭୟମଧ୍ୟରୁ କୌଣସି ଗୋଟିଏର ଅପେକ୍ଷାରେ କୁହାଯାଇଛି କାହିଁକି ନାଁ ଶ୍ରୁତିରେ ଏହିକଥାକୁ ସ୍ପଷ୍ଟ ଭାବରେ ବର୍ଣ୍ଣନା କରାଯାଇଛି ।।୧୬

• ଜଗଦ୍ୱ୍ୟାପାରାଧିକରଣମ୍ ।। ସୂ. ୧୭-୨୨।।

» ଜଗଦ୍ୱ୍ୟାପାରବର୍ଜଂ ପ୍ରକରଣାଦସନ୍ନିହିତତ୍ୱାଚ୍ଚ ।।୧୭।।

ଜଗତ ରଚନାଦି ବ୍ୟାପାରକୁ ଛାଡି ଏବଂ କଥାରେ ହିଁ ତାଙ୍କର ସାମର୍ଥ୍ୟ ରହିଛି ଏହା ଜାଣିବାକୁ ହେବ କାହିଁକି ନାଁ ପ୍ରକରଣରେ ଏହା ସିଦ୍ଧ ହେଉଛି ତଥା

ଜଗତ ରଚନା ଆଦି ବ୍ୟାପାରରେ ତାଙ୍କର କୌଣସି ନିକଟ ସମ୍ବନ୍ଧ ଦେଖାଯାଏ ନାହିଁ ଏଣୁ ଏଭଳି କଥା ସିଦ୍ଧ ହେଉଅଛି ।।୧୭

» ପ୍ରତ୍ୟକ୍ଷୋପଦେଶାଦିତି ଚେନ୍ନାଧିକାରିକମଣ୍ଡଳସ୍ଥୋକ୍ତେଃ ।।୧୮।।

ଯଦି କୁହ କି, ସେଠାରେ ପ୍ରତ୍ୟକ୍ଷ ରୂପେ, ଇଚ୍ଛାନୁସାରେ, ଲୋକ ବିଚରଣର ଉପଦେଶ ଦିଆଯାଇଛି ଅର୍ଥାତ୍ ସେଠାକୁ ଯାଇ ଇଚ୍ଛାନୁସାରେ କାର୍ଯ୍ୟକରିବାର ଅଧିକାର ଦର୍ଶାଯାଇଛି, ତେବେ ଏହା ନୁହେଁ କାହିଁକି ନାଁ ସେଭଳି କହିବା ଅଧିକାରୀ ଲୋକରେ ସ୍ଥିତ ଭୋଗମାନଙ୍କର ଭୋଗ ଉପଭୋଗ କରିବାପାଇଁ ହିଁ ଅଟେ ।।୧୮

» ବିକାରାବର୍ତ୍ତି ଚ ତଥା ହି ସ୍ଥିତିମାହ ।।୧୯।।

ଏହା ବ୍ୟତୀତ ସେହି ମୁକ୍ତାତ୍ମା ଜନ୍ମାଦି ବିକାର ରହିତ ବ୍ରହ୍ମରୂପ ଫଳକୁ ଅନୁଭବ କରିଥାଆନ୍ତି କାହିଁକି ନାଁ ତାଙ୍କର ସେହିଭଳି ସ୍ଥିତି ଶ୍ରୁତି ବର୍ଣ୍ଣନା କରିଅଛନ୍ତି ।।୧୯

» ଦର୍ଶୟତଶ୍ଚୈବଂ ପ୍ରତ୍ୟକ୍ଷାନୁମାନେ ।।୨୦।।

ଶ୍ରୁତି ଏବଂ ସ୍ମୃତି ମଧ ଏହା ଦେଖାଇଅଛନ୍ତି ।।୨୦

» ଭୋଗମାତ୍ରସାମ୍ୟଲିଙ୍ଗାଚ୍ଚ ।।୨୧।।

ଭୋଗମାତ୍ରକେ ସମାନତାରୂପ ଲକ୍ଷଣ ସାହାଯ୍ୟରେ ମଧ (ଏହା ସିଦ୍ଧ ହେଉଛି କି ତାଙ୍କର ଜଗତ ରଚନା ଆଦିରେ ଅଧିକାର ନାହିଁ ) ।।୨୧

» ଅନାବୃତ୍ତିଃ ଶବ୍ଦାଦନାବୃତ୍ତିଃ ଶବ୍ଦାତ୍ ।।୨୨।।

ବ୍ରହ୍ମଲୋକକୁ ଗମନ କରିଥିବା ଆତ୍ମାର ପୁନରାଗମନ ହୁଏନାହିଁ ଏହିକଥା ଶ୍ରୁତି ବଚନାନୁସାରେ ସିଦ୍ଧ ହେଉଛି: ପୁନରାଗମନ ହେଉନାହିଁ ଏହି କଥା ଶ୍ରୁତି ବଚନାନୁସାରେ ସିଦ୍ଧ ହେଉଛି ।।୨୨

।। ଇତି ମହର୍ଷିବ୍ୟାସବିରଚିତେ ବ୍ରହ୍ମସୂତ୍ରେ ଚତୁର୍ଥାଧ୍ୟାୟସ୍ୟ ଚତୁର୍ଥଃ ପାଦଃ ।।୪।।

ଚତୁର୍ଥୋଽଧ୍ୟାୟଃ ସମାପ୍ତଃ

।। ଇତି ବ୍ରହ୍ମସୂତ୍ରଂ ସମ୍ପୂର୍ଣ୍ଣମ୍ ।।



ହିନ୍ଦୁଦର୍ଶନରେ ପ୍ରସ୍ଥାନତ୍ରୟୀର ସ୍ଥାନ ଅତ୍ୟନ୍ତ ଉଚ୍ଚରେ । ଶ୍ରୀମଦ୍ ଭଗବଦ୍‌ଗୀତା, ଉପନିଷଦ (ଈଶାଦି ଏକାଦଶୋପନିଷଦ) ଏବଂ ବ୍ରହ୍ମସୂତ୍ର ଗ୍ରନ୍ଥତ୍ରୟକୁ ପ୍ରସ୍ଥାନତ୍ରୟୀ କୁହାଯାଏ । ବ୍ରହ୍ମ-ସୂତ୍ର ବା ବେଦାନ୍ତ ଦର୍ଶନ ତହିଁରୁ ଅନ୍ୟତମ । ଏହା ବ୍ରହ୍ମ ପ୍ରମାଣ୍ୟ ମୀମାଂସା ବା ବେଦାନ୍ତ ବିଷୟକ ୫୫୫ଟି ସୂତ୍ରର ସମାହାର । ଏହା ବିଶେଷକରି ନ୍ୟାୟ ପ୍ରସ୍ଥାନ ବା ଯୁକ୍ତି ଭିତ୍ତିକ ପ୍ରସ୍ଥାନ ଅଟେ । ମୂଳତଃ ସଂସ୍କୃତ ଭାଷାରେ ଭଗବାନ୍ ବ୍ୟାସଙ୍କ (ବାଦରାୟଣଙ୍କ) ଦ୍ୱାରା ଲିଖିତ ହୋଇଥିଲେ ହେଁ ଅଧୁନା ଅନେକାନେକ ଭାଷା ଓ ଟୀକା ଉପଲବ୍ଧ । ଉଲ୍ଲେଖ ଯୋଗ୍ୟ କି, ଏହି ଗ୍ରନ୍ଥ ମହାନତା ଦୃଷ୍ଟିରୁ ଏତେ ମର୍ଯ୍ୟାଦିତ ଯେ ପ୍ରାୟ ସମସ୍ତ ମୁଖ୍ୟ ସଂପ୍ରଦାୟଭୁକ୍ତ ଆଚାର୍ଯ୍ୟମାନେ ଏହାର ଭାଷ୍ୟ ନିଜସ୍ୱ ଶୈଳୀରେ ପ୍ରସ୍ତୁତକରି ଶିଷ୍ୟମାନଙ୍କୁ ଶିକ୍ଷିତ କରାଇବାର ପ୍ରୟାସ କରିଛନ୍ତି । କୁହାଯାଏ, ବେଦାଦି ଶାସ୍ତ୍ରର ସାରନିର୍ଯାସ ସମ୍ବଳିତ ବେଦାନ୍ତ, ଯାହା ସୂତ୍ରାକାରରେ ରଚିତ ହୋଇ ବ୍ରହ୍ମାଣ୍ଡତତ୍ତ୍ୱ ସମୂହକୁ ଏକତ୍ରିତ କରିପାରିଛି ତାହା ହେଉଛି ଏହି ବ୍ରହ୍ମସୂତ୍ର/ଶାରୀରିକ ମୀମାଂସା/ବେଦାନ୍ତ ଦର୍ଶନ । ଆଉ ଉପନିଷଦମାନଙ୍କର ବୈପରୀତ୍ୟାଦି ରୂପେ ବ୍ୟାଖ୍ୟାପୂର୍ବକ ସମନ୍ୱୟର ଚେଷ୍ଟା କରିଥିଲେ ହେଁ ବ୍ରହ୍ମସୂତ୍ର ହିଁ ଉତ୍ତର ମୀମାଂସା ରୂପରେ ବ୍ୟକ୍ତ ହୁଏ । ମୀମାଂସା ଦର୍ଶନରେ ବିଭିନ୍ନ ବୈଦିକଶାସ୍ତ୍ର ଶିକ୍ଷା ମାଧମରେ ସାମଞ୍ଜସ୍ୟ ଆଣିବା ପାଇଁ ଚେଷ୍ଟା କରିଅଛି । ଉକ୍ତ ମୀମାଂସା ଦୁଇ ଭାଗରେ ବିଭକ୍ତ ଯଥା- ଜୈମିନୀୟ ପୂର୍ବମୀମାଂସା ଯହିଁରେ ବୈଦିକ ଯାଗଯଜ୍ଞ ବ୍ୟାଖ୍ୟା କରାଯାଇଛି ଆଉ ଉତ୍ତର ମୀମାଂସା ଯେଉଁଥିରେ ବ୍ରହ୍ମ ମୀମାଂସା ଉକ୍ତ ହୋଇଛି । ଅତଃ ଶାସ୍ତ୍ରର ମାନ୍ୟତାନୁସାରେ ପ୍ରଧାନ୍ୟ ରହିବା ସ୍ୱାଭାବିକ ।



*Printed & Published By*

**Aum Prakashan Mandir**
Dolamandapa Sahi, PURI, ODISHA
aumkar@live.in | aumkar.co
Phone/Fax: 06752 232323

Order Online: www.aumkar.in




**Price: ₹ 31/-**